# ଆକାଶ ପରି ନିବିଡ଼

ସୌରୀନ୍ଦ୍ର ବାରିକ



ଓଡ଼ିଶା ବୁକ୍ ଷ୍ଟୋର

# ॥ ଆକାଶ ପରି ନିବିଡ଼ ॥


ଲେଖକ :
ସୌରୀନ୍ଦ୍ର ବାରିକ

ସ୍ୱତ୍ତ୍ୱାଧିକାରିଣୀ :
ଶ୍ରୀମତୀ ରମା ବାରିକ

ପ୍ରକାଶକ :
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍‌ଷ୍ଟୋର
ବିନୋଦବିହାରୀ,
କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୫

ପ୍ରଚ୍ଛଦ :
ଅସିତ୍ ମୁଖାର୍ଜି

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
ଝୋଲସାହି (ନର୍ତ୍ତ କଲେଜ)
କଟକ-୭୫୩୦୦୧

ମୂଲ୍ୟ :
ସାଧାରଣ-**ଦଶ ଟଙ୍କା**

ଶୋଭନ-**ଚଉଦ ଟଙ୍କା**


**AKASA PARI NIBIDA**


by :
Saurindra Barik

Published by :
Gobinda Charan Patra
Orissa Book Store
Binodbehari, Cuttack-2

First Edition : 1985

**Price : Rs. 14/-**

# ସୂଚୀ

ଯିଏ ଗୋଟାଏ ଅବୁଝା ବ୍ୟକ୍ତିଙ୍କ ପ୍ରତି ସାରା-ଜୀବନ ନିଜର ଦ୍ୱିଧାହୀନ ସମର୍ପଣ ଭାବ ପ୍ରଦର୍ଶନ କରିଆସିଛି, ସେଇ ମୋ ସୁଖଦୁଃଖର ସାଥୀ **ରମା** ହାତରେ ଏ ବହିଟିକୁ ଉତ୍ସର୍ଗ କଲି ।

**ସୌରୀନ୍ଦ୍ର**

**ଏହି ଲେଖକଙ୍କର ଅନ୍ୟାନ୍ୟ କୃତୀ :**

କବିତା : (୧) ସାମାନ୍ୟ କଥନ

(୨) ଉପ ଘରତ

ସମାଲୋଚନା : (୧) ଅନ୍ୱେଷାର ସ୍ୱର

(୨) ଚେତନାର ଚୌହଦ୍ଦି

ଅନୁବାଦ :

ମହାନ୍ ଓ ସୁନ୍ଦର ଧାରଣାର ମୂଳଉତ୍ସ—ଏକ ତାତ୍ତ୍ୱିକ ଜିଜ୍ଞାସା

ମୂଳ ରଚନା—ଏଡ଼ମାଣ୍ଡ ବାର୍କ

## ।। ପଦ୍ମ ।।

ତୋତେ ପାଇଲେ
କୋଟିନିଧି ମିଳେରେ ପଦ୍ମ
ସ୍ୱପ୍ନର ପଦ୍ମତୋଳା ତୁ
ମୃତ୍ୟୁର ପଦ୍ମାବନ୍ତ !

ଆଖି ପଦ୍ମ, ମୁଖ ପଦ୍ମ
ହାତ, ପାଦ, ଗୁଣ୍ଡି, ନାଭି
ସବୁ ପଦ୍ମ, ଖାଲି ପଦ୍ମ
ଆକାଶ ସାଗର ପଦ୍ମ
ସୂର୍ଯ୍ୟ, ଚନ୍ଦ୍ର, ତାରା, ପଦ୍ମ
ପଦ୍ମବନେ ମୋର କଏ ଉଭା ହୁଏ
ରକ୍ତରେ ମୋ' ଶ୍ୱାସ ପ୍ରଶ୍ୱାସରେ
କଏ ଖାଲି ପଦ୍ମ ଭରିଦିଏ ।
ପଦ୍ମମଧୁ ଅଳଏ ଅମୃତ ପରି
ପଦ୍ମ—ଆଲିଙ୍ଗନେ କା'ର
ଦଳିତ ମଞ୍ଜିତ ହୁଏ !

ଯୋଜନ ଅନ୍ଧାର ଚିପି
ସାତ ତାଳ ପଙ୍କ ଚିପି
କିଏ ସେହି ଅଜଣା ସୂର୍ଯ୍ୟ
କିଏ ସେହି ଅଜଣା ଅନନ୍ତ
କା'ର ନାଭି ପଦ୍ମ ମୁଁ
କାହାର ଆଶାସ୍ୱୀ !



## ॥ ପ୍ରତୀକ୍ଷା ॥

ପଥର ମୂର୍ତ୍ତିଟି ପରି
ପାର୍କ୍‌ର ଗୋଟିଏ କୋଣରେ ଚୁପ୍‌ଚୁପ୍ ସେ ।
ତା ମୁହଁରେ ଦୀର୍ଘ ପ୍ରତୀକ୍ଷାର କ୍ଳାନ୍ତି, କିନ୍ତୁ ଆଖିରେ
ଆଉ ପ୍ରତୀକ୍ଷା ନ କରିବାର ଅନିଚ୍ଛା । ସେ ଯେମିତି
ପ୍ରତୀକ୍ଷା କରି କରି ପ୍ରତୀକ୍ଷା କରିବା କଥା ପାଶୋରି ଦେଇଛି
ପହଁରି ବୁଲୁଥିବା ହଂସ ଯୋଡ଼ି ପରି ଅବା ଉଡ଼ିବୁଲୁଥିବା
ହରରଂଗୀ ପ୍ରଜାପତି ପରି ପାର୍କର ଅଂଶଟିଏ ବୋଲି
ନିଜକୁ ମାନି ନେଇଛି ।

‘କାହାକୁ ଅପେକ୍ଷା କରିଛ ?’ ମୋ’ କଥାରେ ଚମକି କହିଲା
‘ମୋତେ ଏଠି ବସିବାକୁ କହି କୁଆଡ଼େ ଯେ ଗଲା ଆଉ
ଫେରିଲାନି
ତାକୁଇତ ଅନାଇ ବସିଛି । ତାକୁ ଚାହିଁ ଚାହିଁ ତାକୁ ଭୁଲିଲିଣି,
କେଉଁଠୁ ଆଣିଲା ପୁଣି କେଉଁଠିକି ନେବ ସବୁ ଭୁଲିଲିଣି
ଭୁଲିଲିଣି ମୋ’ ଅପେକ୍ଷା କରିବା ।’

‘ସତେ କ’ଣ ଆଉ ସେ ଆସିବ ?’
ଏତକି କହି ମୋତେ ସେ ଚାହିଁଲା । ଉତ୍ସୁକ ଆଖିରେ ତା’ର
ଫୁଟି ଉଠୁଥିଲା ହଂସ ଆଉ ପ୍ରଜାପତିର ଲୋଭନୀୟ ପାର୍କ ।



## ।। ଅନ୍ୱେଷଣ ।।

କେତେ ମୁଁ ଖୋଜିବି କହ ? ଖୋଜି ଖୋଜି ତ
କ୍ଲାନ୍ତ ହେଲିଣି । ଖୋଜିଲିଣି ଗିରିବନ, ନଦନଦୀ,
ଆକାଶ ବତାସ, ଖୋଜିଲିଣି ଯୁଗ ଯୁଗ କେତେ
ବର୍ଷ, ଦିନ ମାସ । ଆଉ କହ କେତେ ମୁଁ ଖୋଜିବି ?
କେଉଁଠି ବା ତାକୁ ମୁଁ ପାଇବି ?

ସେ କିନ୍ତୁ କହିଥିଲେ ଖୁବ୍ ସହଜ ତା' ଘର ପାଇବା
ସମସ୍ତେ ତା' ଜଣାଶୁଣା, ପିଲାଟିଏ ସୁଦ୍ଧା କହିଦେବ
ତା' ଘର ଠିକଣା । ସେହି ଭରସାରେ ଚାଲିତ ଆସିଲି
ଏ ନୂଆ ରାଜ୍ୟରେ ତାକୁ ଖୋଜି ଖୋଜି
ହୀନବଳ ହେଲି, ମୁକ ପାଲଟିଲି ।

ଆଉ କିଛି ବାକି ନାହିଁ । ଏମିତିକି ପଚାରିଛି ପ୍ରତି ଝରିଲା ପତ୍ରକୁ
ହସୁଥିବା କଳିକାସ୍ତୁ ପୁଣି ଉଡ଼ୁଥିବା ହରିରଂଗୀ ପତଙ୍ଗମାନଙ୍କୁ ।
ମୋ ପ୍ରଶ୍ନ ଶୁଣି ସବୁ ହସିଛନ୍ତି । କହିଛନ୍ତି 'ଆରେ ବୋକା ! ତାକୁ
ଖାଲି ସମସ୍ତେ ଖୋଜନ୍ତି । ତାକୁ ପାଇବୁ ଗୋଟେ କ'ଣ ? ଏହି
ଖୋଜିବାଟା ହିଁ ତ ସିଏ । ସକାଳେ ବଣିଝୁଣ୍ଟ ତଳେ ପଡ଼ିଥିବା
ଝଡ଼ପୋକ
ରାତିସାରି ତାକୁ ଖୋଜିଥାଏ ନା ପାଇଥାଏ ?'



## ।। ପନ୍ନଝଡ଼ା ।।

ସେ ଦେଖନ୍ତି
ଶୁଖିଲା ପଥ ପରି ବାଳସବୁ ଝରି ଝରି ପଡ଼େ ।
ତାଙ୍କ ମୁହଁରେ ବ୍ୟସ୍ତତାର ଝଣ୍ଡିଆ ଭୂତ
ଏବଂ ଯେତେ ନୂଆ ନୂଆ ତେଲ ଆଉ କ୍ରୀମ୍
ବୁଡ଼ିଗଲା ମଣିଷର କୁଣ୍ଠା ଏବଂ କାଠି ।

ଦର୍ପଣ ଆଗରେ ତାଙ୍କୁ ଡରଡର ଲାଗେ
ଆଲ୍‌ବାମ୍ ଭିତରୁ ଅତୀତ ଖାଲି ଖଚେଇ ହୁଏ
ମୂଷାଲାଞ୍ଜ ବେଣୀଟିକୁ ଧରି ବିକଳରେ କହି ଉଠନ୍ତି
'ହେ ମୋର କ'ଣ ହେଲା; ସେଦିନର ନଈବଢ଼ି ବାଳ
ଆଜି କୁଆଡ଼େ ଗଲା ?' ଗମ୍ଭୀର ହୋଇ କହେଁ
'ଜୀବନର ପନ୍ନଝଡ଼ା ବୋଧହୁଏ ଏଇ ଆରମ୍ଭ ହେଲା ।'

ମୋ କଥାରେ ଶୁଖିଲା ହସି ସେ କହନ୍ତି
'ଗଛ ନ ହୋଇ ଯା' ମଣିଷ ମୁଁ ହେଲି,
କବିତାକୁ ଭଲପାଇ ତୁମ ହାତ ଯା' ଧରିଲି ।'



## ।। ପରିଚିତ ଅଚିହ୍ନା ।।

ମୁଁ କହିଲି
ଖଣ୍ଡିଆଭୂଚି ବିହିରେ ଶୁଖିଲା ପର୍ବ ପରି
ଏକ ନିଖୁଣ୍ଡ ଆଙ୍କର କୁଣ୍ଡଳୀ ଭିତରେ
ଆମେ ଖାଲି ଧଂନ୍ଧ ହେଉଥାଇଁ
ଆଗଚ ନାହିଁ କି ବିଗତ ବି ନାହିଁ ।

ଏତକରେ ଚମକ କହିଲି—
ମୋ' ଉଡିବା କିଲୁ ଶୁଖିଲା ପତ୍ରର କ୍ଲୀବ ଧନ୍ଧ ହେବା ନୁହଁ
ମୁଁ ଚ ଡେଣା ଲଗା ପିମ୍ପୁଡ଼ି । ଡେଣାରେ ଦୁଇଡେଣା ଝଡ
ଆଖିରେ ଆଖିଏ ଆକାଶ । ଆଉ ମୁଁ ଉଡ଼ି ଚାଲିଛି
ମୋର ଚିହ୍ନା ଅଜଣା ଆଡକୁ, ପରିଚିତ ଅଚିହ୍ନା ଆଡ଼କୁ
ଖାଲି କେବେ ନ ପାଇବାର ପୂର୍ଣ୍ଣତା ପାଇଁ ।



## ।। କିଏ ଡାକେ ।।

କିଏ ଖାଲି ଡାକେ ।

କିଏ ଡାକେ, କାହିଁକି ବା ଡାକେ, କେବେ ଡାକେ
କେଉଁଠିକି ଡାକେ କିଛି ତ କହେନି
କିଏ ଯେମିତି ଖାଲି ଡାକି ଡାକି ଯାଏ
ଆଜି ମୁଁ ରହି ରହି ଶୁଣୁଥାଏ ତାରି ସେ ଡାକ ।

ସେ ଡାକ ଯେମିତି ବାଂଶବଣା ତଳେ ଢେଇର ଭଙ୍ଗା ଭଙ୍ଗା ସ୍ୱର
ପାହାଡ଼ି ଝରଣାର ଛଇଳ ଚପଳ କୁଳୁକୁଳୁ । କାଚର ଚୁଡ଼ିର କେମିତି
ଲୁହ ଲୁହାଣ କରେ । ଅନାଶିତ ସ୍ପର୍ଶ ଖାଲି ଶିହରିତ କରେ ।

ପାହାଡ଼କୁ ପଚାରିଲି, ପଚାରିଲି ନଈପଠା ନଡ଼ିଆ ଗଛକୁ
କୁହ ଭଲା ଜାଣିଛକି କିଏ ଡାକେ କାହିଁକି ବା ଡାକେ
କେବେଠୁ ଡାକୁଛି ପୁଣି କେତେଦିନ ଆଉ ବା ଡାକିବ
କେହି କିଛି କହିଲେନି, ପ୍ରଶ୍ନ ମୋର ପୁଣି ଥରେ ମୋତେ
ପଚାରିଲେ ।

କିଏ ଡାକୁଛ ! କାହିଁକି ଡାକୁଛ ! ବ୍ୟସ୍ତ ହୋଇ ଯେବେ
ପଚାରିଲି
ମୋ' ପ୍ରଶ୍ନରେ ନୀରବତା ଗୁମୁରି ଉଠିଲା, ଥମ୍ ଥମ୍
ଡାକିଲା ଶୂନ୍ୟତା
ସ୍ୱରରେ ଛୁପି ଧରି ଯୋଜନ ଦୂରତା କାନପାଖେ କିଏ ସେ
କହିଲା
ଚିହ୍ନି ପାରୁନୁ ! ଏତେ ଶୀଘ୍ର ଭୁଲିଗଲୁ । ତୋତେ ପରା ମୁଁ
ଡାକୁଛି ।

ଏଇମିତି କିଏ ଖାଲି ଡାକେ ।



## ।। ଅତିଥି ।।

କିଛି ମୁଁ ଜାଣେନି
କେମିତି ତା' ରୂପ ପୁଣି କେମିତି ତା ସ୍ୱର
କେମିତି ବା ବେଶଭୂଷା କେମିତି ବେଭାର
କେଉଁଠୁ ଆସିବ ପୁଣି କେବେ ପହଞ୍ଚିବ
ମୋ' ଅତିଥି ହେବ ମୋର ପୁରକୁ ମଣ୍ଡିବ
ଏତିକି ଜାଣିଛି ଖାଲି ନିଶ୍ଚେ ସେ ଆସିବ
ଦେଇଥିବା କଥା କେବେ ଅନ୍ୟଥା ନୋହିବ ।

ତଥାପି ତ ଡରଲାଗେ, ବ୍ୟସ୍ତଲାଗେ କ'ଣ କରିବି
କେମିତି ବା ତାକୁ ଶଂଖୁଳିବି ।
ଅଚିହ୍ନା ରୂପକୁ ଦେଖି ହଠାତ୍ ଯଦି ହତବାକ୍ ହୁଏ
ପାରୁଛି ଆଜିବି କ'ଣ ଯଦି ଖାଲି ଠିଆ ହୋଇ ରହେ
ସିଏତ ଆଉ ସହିବନି, ମନ ମାରି ଚାଲିଯିବ ଆଉ ଫେରିବନି !
କିଛି ମୁଁ ପାରେନି ଭାବି
ଭୟ ଆଉ ବ୍ୟସ୍ତତାର ଘୂର୍ଣ୍ଣି
କୋରି କୋରି ମୋତେ ଖାଏ ଖାଲି ।

ମୋ' ବ୍ୟସ୍ତତା ଦେଖି କିଏ ଜେମିତି କହିଲା
ଆରେ ବାପ୍ଲା କିଆଁ ଏତେ ଧନ୍ଦ ଭୁ ହେଉଛୁ ?

ସିଏତ ଆସିବ ତାର, ତୁ ତୋର କାମ କରିଯା
ତୋରଣ ସଜାଇଥା, ବସାଇଥା ଘଟ
ଗୋଡ଼ ଧୁଆ ପାଣି ରଖ, କେଉଁଠି ବସିବ ସିଏ
ଭଲକରି ଆସନକୁ ପାରି ଦେଇଥା ।
ତା'ପରେ ଦେଖିବୁ ତୁ ଡରଭୟ କିଛୁ ରହିବନି
ଯେତେ ସବୁ ଧନ୍ଦ ହେବା ମନେ ହେବ ଭୁଲ୍ଲା ପାଗଲାମି ।

ସେତେବେଳେ ଆସିବ ସେ ହସିହସି ପରିଚିତ ବନ୍ଧୁଟିଏ ପରି
ଅରୂପରେ ତୋତେ ସେ ମୋହିବ, ମାରବତାର ବେଣୁକୁ ବାଇବ
ତା'ପରେ କୋଳକୁ ତାର ଟାଣିନେବ ଉଦାସୀନ
ଆସକ୍ତିରେ ଭରି ।



## ।। କାଉଣ୍ଟର ।।

ଦୀର୍ଘ ଧାଡ଼ିରେ ଧୀରେ ଧୀରେ ଆଗେଇ ଆଗେଇ
କାଉଣ୍ଟର ପାଖରେ ପହଞ୍ଚିଥିବା ଲୋକଟି
କେବେଠୁ ଲାଇନ୍ ମାରିଛି ? କେତେ ଯୁଗରୁ ?
ତା ମୁହଁରେ ବର୍ଷ ବର୍ଷ ଖରା ବର୍ଷାର ଚିହ୍ନ,
ପାଦରେ ଯୋଜନ ପଥର ଧୂଳି, ଆଉ ଆଖିରେ
ପାଖେଇ ଆସୁଥିବା କାଉଣ୍ଟର୍‌ର ଜଳକା ଛବି ।

ଧାଡି ଶେଷରେ ଠିଆ ହୋଇ ପାଦ ପରଖି ପରଖି
ବ୍ୟସ୍ତ ହୋଇ ଯିଏ ପାଟି କରି ଉଠିଲା—
'ସତେ କ'ଣ ଟିକେଟ୍ ମିଳିବ ?' ତା' ମୁହଁରେ
ସକାଳର ଖରା, ପହିଲି ଆଷାଢ଼ର ମେଘ, ପାଦରେ
କଅଁଳ ଘାସର ଛନ୍ ଛନ୍ ଆଉ ଆଖିରେ
ଦୂର କାଉଣ୍ଟର୍‌ର 'ଝାଇଁମରା' ନିଶା ।

ତା' ପାଟି ଶୁଣି,
ଆଗ ଲୋକଟିର ନିଦା ଆଖି ନୀରବରେ କହି ଉଠିଲା—
'ବନ୍ଧୁ ! ବ୍ୟସ୍ତ କାହିଁକି ? ଏ କାଉଣ୍ଟର୍‌ରେ ଯେ କେବେ
'ହାଉସ୍ ଫୁଲ୍' ନୋଟିସ୍ ଝୁଲେନି । ଏ ଯେମିତି
ଶୂନ୍ୟଗର୍ଭ ଉଦାର ଆକାଶ ଆଉ ଆମେ ସମସ୍ତେ
ଉଡିବୁଲୁଥିବା ହରରଙ୍ଗୀ ଅସଂଖ୍ୟ ଚଢ଼େଇ ।'



## ॥ ଆସ ଏଥର ଯିବା ॥

ଉଠ ଏଥର ଯିବା
ଘରକୁ ଫେରିବା ।

ଆମେ ଆସିଥିଲେ ଘର ଫର ଭୁଲି
ଟିକେ ଗପିବାକୁ, କ୍ଷଣକ ପାଇଁ ସମୁଦ୍ର ହେବାକୁ
ଉଦ୍‌ଢ଼ବ ସମୁଦ୍ର କନ୍ଥୁ କଣ୍ଠୁ ହେବାକୁ ଦିଏନ
ସିଏ ତ ନିଜେ ଏକୁଟିଆ ବାଆଁରିଟିଏ
କଟା ପଇଡ଼ ସବୁ କୂଳକୁ ଫୋପାଡ଼ିଲା ପରି
ସମସ୍ତଙ୍କୁ ଯେ ଯା'ର ଏକଲା ମନର
ସନ୍ତସନ୍ତିଆ ବେଳାଭୂଇଁକୁ ଫୋପାଡ଼ି ଦିଏ ।

ହେଇ ଦେଖନ୍ତୁ, ହାତ ଧରାଧରି ଆମ ଭିତରେ
କେମିତି ଚିଣ୍ଡି ଧସେଇ ପଶିଲା । ହାତ ମୁଠାରେ
ଅଠା ଅଠା ଦୂରତା ଭରି ଆମକୁ ଏକ୍‌ଲା କରିଦେଲା
ଆମ ଅଜାଣତରେ ଆଉ କେଉଁ ବେଳା ଭୂଇଁ, ଝାଉଁବନ
ପୁଣି ମୁଠାମୁଠା ଶାମୁକାର କଣ୍ଟକିତ କୋଠିକମ ଭିତରକୁ
ଅଲଗା ଅଲଗା ଅଜାଡ଼ି ଦେଲା । ମନରେ ଭରିଦେଲା

ଢୁଢ଼୍ ଏ କେଉଁ ଲୁଣି ମାରବତା ?
କଣ୍ଠା ଘା'ରେ ସମୁଦ୍ର ମୁଠାଏ ଲୁଣ ଯେମତି ।

ସମୁଦ୍ର ବହୁତ ହେଲା
ଆସ ଏଥର ଘରକୁ ଯିବା
ବୁବୁ ଛୁନୁଙ୍କ କେଁ କାଁ ଭତରେ
ନଜକୁ ଭୁଲବା, ସମୁଦ୍ର ଭୁଲବା ।



## ।। କେତେ କେତେ କଥା ଦେଇ ।।

କେତେ କେତେ କଥା ଦେଇ
ଗୋଟେ ବି କଥା ରଖିଲନି

ଦିନ ପରେ ବି ଆଲୁଅ ଟିକେ ଥାଏ
ଟୋକା ବୁଡ଼ିଯାଏ ସିନା ପାଣି ଚହଲୁ ଥାଏ
କିନ୍ତୁ ତୁମ ପାଖରୁ କେହି ଥରେ ଗଲେ
ଏକା ଥରେ ମୂଳରୁ ସେ ଯାଏ ।
ଟିକେ ଫେରି ବି ନୁହଁନି

ମୁଁ ରହିଗଲି
ଗୋଧୂଳି ହୋଇ, ଚହଲି ପାଣି ହୋଇ
ନଥିବାର ଥିବାଥିବା ଛୁଇ ଭିତରେ

ତୁମେ ତ ଅନ୍ଧାର, ଚଳନ୍ତା ଛୁଇ
ଅନ୍ଧାର ଦେହରେ କେବେ କ'ଣ କା'ର ଛାଇ ପଡ଼େ
ସେ ଖାଲି ସମସ୍ତଙ୍କୁ ଛାଇ ଘାଉଳି କରେ
ଗ୍ରହଣ ଖଣ୍ଡିଆ କରେ

କେତେ କେତେ କଥା ଦେଇ
ଗୋଟେ ବି କଥା ରଖିଲନି ।



## ।। ତୁମ ଅନୁପସ୍ଥିତି ।।

ତୁମ ଅନୁପସ୍ଥିତି
ଅନ୍ଧାର ରାତି
ଲକ୍ଷ୍ୟ କୋଟି ତାରା
ଚୁମ୍ବନର ସ୍ମୃତି ।

ମହୁମାଛି ପରି
ଆଲୁଅର ଡେଣା ମେଲି
ସ୍ମୃତିର ତାରା ସବୁ ଛୁଟି ଆସନ୍ତି
ସେମାନେ ଦଂଶନ କରିବେ
ଦେହରେ, ମନରେ ଭରିଦେବେ
ନିଃସଙ୍ଗତାର ବିଷ ।

ଏ ସ୍ମୃତି ହୁଅନ୍ତା ଯଦି
ରଜନୀଗନ୍ଧାର ଗୁଚ୍ଛ
ଏ ସ୍ମୃତି ହୁଅନ୍ତା ଯଦି
ଝିଙ୍କାରିର ଡାକ
ଅମା ଅନ୍ଧାରରେ ଜହ୍ନ ଜଅଁନ୍ତା
ମାରବତା ହୁଅନ୍ତା ପ୍ରଜ୍ୱଳ ।

କିନ୍ତୁ କିଛି ହୁଏନି
ସ୍ମୃତିର ଶୁଖିଲା ହାଡ଼କୁ ରେକୁଟି ରେକୁଟି
ଶେଷରେ ନିଜ ଲକ୍ଷ୍ୟ ରୁଖିବା ହିଁ
ଖାଲି ସାର ହୁଏ ।



## ।। ସେଦନ ।।

ତାଙ୍କୁ ଆଜ ବି ଦେଖିଲେ କେମିତି ସେଦନ ସେଦନ ଲାଗେ
ଆଖିରେ ଚହଲିଉଠେ ସେଦନର ଲନ୍, ପାରଦ ଚପଳ ଆଖି
ଆଉ ସେଦନର ସେ ମୃଗ-କ୍ଷିପ୍ର ମଦାଳସୀ ଚାଲି ।

ଆଜ ସେ କୁଆଡ଼େ ମୋଟା ହେଲେଣି
ଆଖିତଳେ ଦାଗ ପଡ଼ିଲାଣି
ଆଉ ହଳଦିଆ ପତ୍ରପରି
ଗୋଟେ ଗୋଟେ ବାଳ ବି ପାଚି ଆସିଲାଣି
ତଥାପି ତାଙ୍କୁ ଦେଖିଲେ ଖାଲି ସେଦନ ସେଦନ ଲାଗେ,
ସିଏତ ସ୍ମୃତିର ସ୍ଥାପତ୍ୟଟିଏ,
ଯା' ପାଖରେ କାଳ ନପୁଂସକ ହୁଏ
ବର୍ତ୍ତମାନ, ଭବିଷ୍ୟତ ସବୁ ହୁଏ ମିଛ ।

ସମୟର ଏ ଖଣ୍ଡିଆ ଭୂତରେ
ନାଗଫେଣି ବର୍ତ୍ତମାନ କୁସୁମିତ ହୁଏ
'ଲୋମା', ଲାମ୍ବାଗୋ ଆଉ ମିଛଦାନ୍ତ ନେଇ
ଖାଲି ସ୍ୱପ୍ନ ଦେଖିହୁଏ
ଆଉ ଚତ୍କାର କରି କହିହୁଏ
କାଲମାନେ ସେଦନ, ସୂର୍ଯ୍ୟମାନେ ସେଦନର ଲନ୍
ଆଉ ବଞ୍ଚିବା ମାନେ ସେ ଚାଲି ପଛରେ ଧାଇଁବା ପୁଣି
ସେ ଆଖିର ତେଜରେ ସୂର୍ଯ୍ୟକରଣରେ ଶିଶିର ବନ୍ଦୁପରି
କ୍ଷଣକପାଇଁ ସୂର୍ଯ୍ୟ ପାଲଟି ଶେଷରେ ନିଃଶେଷ ହୋଇଯିବା ।



## ।। ପ୍ରତାରଣା ।।

ତୁମେ,
ଏବଂ ତୁମର ଏ ସଦା ପରିବର୍ତ୍ତନଶୀଳ ଆକାଶୀ ମନ,
ପ୍ରତିଫଳିତ ହୁଏ—
ମୋ' ହୃଦୟ-ହ୍ରଦର ସ୍ଥିର ବକ୍ଷୋପରେ ।
ଅତି ବିସ୍ତୃତ ଭାବରେ, ଅତି ନିଖୁଣ ଭାବରେ ।

ହେ ଆକାଶ !
ତୁମକୁ ମୁଁ ନିଜର କରେଁ;
କରେ ମୁଁ ତୁମକୁ ମୋର ଅତି ଆପଣାର ।

ତୁମ ରୌଦ୍ରତାରେ ମୁଁ ନିଜକୁ ନିଃଶେଷ କରେଁ ।
ତୁମ ଅଶ୍ରୁଧାରରେ ନିଜକୁ ପ୍ଲାବିତ କରେ ।
ପୁଣି ତୁମର ସ୍ୱପ୍ନରେ—
ମୋ' ହୃଦୟରେ କମ୍ପନ ଖେଳେ ।
ଖେଳେ ପ୍ରଥମ ଚୁମ୍ବନ ପରେ ଅଧରର କମ୍ପନ—
ଆଜି ଏ କମ୍ପନର ବାର୍ତ୍ତା ଦେଇ
ହେ ମାନସୀ !
ନୀଳ ପରି ମୁଁ ପଠାଏଁ ତୁମର ଉଦ୍ଦେଶ୍ୟେ
ଶ୍ୱେତ ମରାଳର ଦୂତ ।

ତୁମେ କେବଳ ଫାଙ୍କି ଦିଅ ।
ଦୁଃଖ ମୋର ଫେରିଆସେ ମୋ'ରି କୋଳକୁ—
ମୋତେ ନଜର ନ କରି ତୁମେ ଖାଲି ଫାଙ୍କି ଦିଅ ।
ବୋଧହୁଏ ଏଇ ପ୍ରତାରଣାଟା ହିଁ ସତ୍ୟ ।
ସତ୍ୟ ବୋଧହୁଏ ମାଂସର ପାଖୁଡ଼ାରେ ସୁରଭିର ଅନୁପସ୍ଥିତି—
ପୁଣି ସତ୍ୟ; ତୁମ ଓ ମୋ ମଧ୍ୟର ଏଇ "ଦୂରତ୍ୱ"ଟି ।
ନକ୍ଷତ୍ର ନକ୍ଷତ୍ରର—
କମ୍ପା ମିଳନ ସ୍ଥାନ ଆଲୁଅ ଓ ଅନ୍ଧାରର ।

ଏ ଦୂରତ୍ୱ ସତ୍ୟ ହୋଇପାରେ—
ହ୍ରଦ ଓ ଆକାଶର ମିଳନ ସ୍ୱପ୍ନ ହୋଇପାରେ ।
ମାତ୍ର ସ୍ୱପ୍ନ ଦେଖିବାଟା ମିଥ୍ୟା ନୁହେଁ ।
ମୋ' ହୃଦୟରେ ତୁମ ପ୍ରତିଫଳନ ମିଥ୍ୟା ନୁହେଁ ।
ଖାଲି ଏକ ବିରାଟ ସତ୍ୟ—
ତୁମର ପ୍ରତାରଣା ପରି ଏକ ନିଷ୍ଠୁର ସତ୍ୟ ।



## ।। ମୁହୂର୍ତ୍ତ ।।

ତା' ମା'ର ଶାଢ଼ି ପିନ୍ଧି ଛୁନୁ ଖେଳୁଥିଲା
ବୋହୂ ହେଉଥିଲା, ମା' ହେଉଥିଲା, ଏଇମିତି
କେତେ କ'ଣ ହେଉଥିଲା; ଶାଢ଼ିର ପରସ୍ତ ଭିତରୁ
ହରରଙ୍ଗୀ ପ୍ରଜାପତିଟି ପରି ଛୁନୁ ମୋର
ମୋ' ଆଡ଼କୁ ଉଡ଼ି ଆସୁଥିଲା ।

ନୂଆ ରଙ୍ଗ, ନୂଆ ସ୍ୱପ୍ନ ଧରି
ପରିଚିତ ଅଚିହ୍ନା ପ୍ରଜାପତିଟି ମୁହୂର୍ତ୍ତର ଫୁଲ ସବୁକୁ
ଛୁଇଁ ଯାଉଥିଲା; ଇନ୍ଦ୍ରଧନୁର ଟିକୁଲି ପରି
ଦିଗନ୍ତରୁ ଦିଗନ୍ତକୁ ଛୁଇଁ ଯାଉଥିଲା ।

ମୁଁ ବି ଉଡ଼ି ଯାଉଥିଲି
ଡେଣାରେ ମୁହୂର୍ତ୍ତର ଧୂଳି, ଦିଗନ୍ତର କ୍ଳାନ୍ତି
ପବନରେ ହଲଦିଆ ପତ୍ରଟି ପରି ଥରି ଥରି ମୋ ପ୍ରଜାପତି
ଉଡ଼ି ଯାଉଥିଲା କେଉଁ ଆକାଶ ଆଡ଼କୁ ?
କେଉଁ ଫୁଲର ଅନ୍ଧାରି କୋଳକୁ ?

ତା' ମା'ର ଶାଢ଼ି ପିନ୍ଧି ଛୁନୁ ଖେଳୁଥିଲା ।



## ।। ତୁମେ କେବେ ରହିବନି ।।

ମୁଁ ଜାଣେ
ତୁମେ ସବୁଦିନ କେବେ ରହିବନି
ଦିନେ ନା ଦିନେ ଛାଡ଼ି ଚାଲିଯିବ ।

ଖୁସିଟିଏ ହୋଇଥିଲେ
ଅବା ଦୁଃଖଟିଏ ହୋଇଥିଲେ
ଦେହ ଆଉ ମନରେ
ସବୁଦିନ ରହିଥାନ୍ତି ।

ଅଦିନିଆ ମେଘ ହଠାତ୍ ଆସି
ସବୁ ଓଦା କରି ଦିଏ । ଚାରିଆଡ଼େ ଭରିଯାଏ
ଭିଜା ମାଟିର ଗନ୍ଧ । ଶେଷ ମଳୟ ଚୁପ୍‌ଚାପ୍ ଆସି
ଆଖିରେ ରଙ୍ଗ ଲେପିଦିଏ
ମନରେ ବୋଳିଦିଏ କେତେ କେତେ ଦେଖି ନଥିବା ସ୍ୱପ୍ନ ।

ଦେହ ଶୁଖିବା ବେଳକୁ ବର୍ଷା ନଥାଏ
ସ୍ୱପ୍ନ ଭାଙ୍ଗିବା ଆଗରୁ ମଳୟ ଚାଲିଯାଇଥାଏ ତା' ବାଟରେ ।

ତୁମେ ଜନ୍ମ ଚାଲିଗଲେ ବି
ମୋତେ ଟିକେ ଏକଲା ରହିବାକୁ ଦିଅନି
ଚଢ଼େଇ ଭଗ୍ନ ସଞ୍ଜର ଗଛଟିଏ ପରି
ନିରୋଳା ମନରେ ଭରିଦିଅ
ଗୁଡ଼ାଏ କଚର ମିଚର ।

ମୁଁ ଜାଣେ, ତୁମେ କେବେ ରହିବନି
ଦିନେ ନା ଦିନେ ଛାଡ଼ି ଚାଲିଯିବ ।



## ॥ ଏକ୍‌ଲା କରିଦେଇ ଗଲା ॥

ସିଏ ସିନା ଏକ୍‌ଲା କରିଦେଇ ଗଲା
ମୁଁ କିନ୍ତୁ କେବେ ଏକ୍‌ଲା ନୁହେଁ ।

ଠିକ୍ ବିଜୁଳି ପରି ସିଏ
ଦେଖୁ ନ ଦେଖୁଣୁ ଅଦର୍ଶନ୍ ହୋଇଯାଏ
କୁଆଡ଼େ ଛୁ'ମାରେ ।
କିନ୍ତୁ ଚାଲିଗଲା ପରେ ରହିଯାଏ, ଭେଦିଯାଏ
ପାହାଡ଼ ଦୁଲୁକି ଉଠେ, ଦୁଲୁକି ଉଠେ ନଈ ପଠା
ଆଉ ବି ଦୁଲୁକି ଉଠେ ରକ୍ତ, ମାଂସ, ହାଡ଼ ।

ଦେଖ୍‌ନ, ଆଜି ନଥାଇ ବି କେମିତି
ହଜାରେ ଦେହ ଧରିଛି । ଯେମିତି କୁନି କୁନି
ପ୍ରତ୍ୟେକ ଢେଉରେ ନାଚୁଛି ଛନ୍ଦେ ଛନ୍ଦେ ଜହ୍ନ
ପ୍ରତ୍ୟେକ ଘାସ ଆଗରେ ଝୁଲୁଛି ବନ୍ଦୁଏ ବନ୍ଦୁଏ ସୂର୍ଯ୍ୟ ।

ସଞ୍ଜର ବଢ଼ିଲା ଛାଇ ତ ସିଏ
ସତରେ ଝିଙ୍କାରର ଡାକ ତ' ତା'ର ଡାକ

ବର୍ଷା ଆଡ଼କୁ ସିନା ତାର ରୁଣୁଝୁଣୁ ହାତ ଲମ୍ବି ପାଉନି
କିନ୍ତୁ ଆଜି ବର୍ଷା ତ ତା'ର ହାତ ହୋଇ
ମୋତେ ଛୁଇଁ ଦେଉଛି
ହାଡ଼ର·ଶିଡ଼୍‌ରେ ରୁଣୁଝୁଣୁ ସଙ୍ଗୀତ ତୋଳୁଛି ।

ସିଏ ସିନା ଏକଲା କରି ଦେଇଗଲା
ମୁଁ କିନ୍ତୁ କେବେ ଏକ୍‌ଲା ନୁହେଁ ।



## ।। ଆଜି କୁଆଡ଼େ ଯିବାନି ।।

ଆଜି କୁଆଡ଼େ ଯିବାନି
ଏଇଠି ବସିବା ।

ସୁନା ସଞ୍ଜରେ
ଦୂର ପାହାଡ଼, ଡେଙ୍ଗା ଦେବଦାରୁ
ଛାଇ ପାଲଟନ୍ତି
ବାଦୁଡ଼ି ସବୁ ପଲପଲ ହୋଇ
କେଉଁଠୁ କେଜାଣି ଉଡ଼ି ଆସନ୍ତି ।

ତୁମ ଚୌକିକୁ
ଆଉ ଟିକେ ପାଖକୁ ଟାଣି ଆଣନା
ପ୍ଲିଜ୍ ।
ରାତିର ବଷାରେ ଦୁଇଟି ଚଢ଼େଇ ଘର
ଆମେ ବ ପାଲଟି ଯା'ନ୍ତେ
ଦୂରୁ ଦୂରୁ ଦୁଇଟି ଛାଇ ।

କେତେ କେତେ ଛାଇ
ଖସରେ ହଳଦୀ ବସନ୍ତ ପରି

ଆମ ଆଗରେ ଜଳି ଉଠନ୍ତେ
ଆଉ ସେ ସବୁର ଛୁଇର ଛାଇ
ଆମକୁ କରନ୍ତା ଦୁଇଟି ମହାଛାଇ
ଯେମିତି ଅରଣ୍ୟ, ଯେମିତି ସମୁଦ୍ର ।

ପବନ ଯେମିତି
ମରୁଭୂମିର ବାଲିକୁ ଢିଡ଼କୁ ଢିଡ଼ ସଜାଡ଼ି ଥାଏ
ଆମେ ସେଇମିତି ଆମ ଛାଇ ସବୁକୁ
କ୍ଷଣିକ ଚିରନ୍ତନତାରେ ସଜେଇବା
ନକ୍ଷତ୍ରାବର୍ତ୍ତର ପରଭଳି
ଦୁଇଟି ଜ୍ୱଳନ୍ତ ଛାଇ
ଏ ସୁନା ସଞ୍ଜରେ ବୁଜି ହୋଇଯିବା
ସକାଳର ଆଶାରେ, ଆଲୁଅର ପ୍ରତୀକ୍ଷାରେ ।

ଆଜି ଆଉ କୁଆଡ଼େ ଯିବାନି
ପାଖାପାଖି ଟିକେ ଏଇଠି ବସିବା ।



## ॥ ଏ କବିତା ତୁମ ପାଇଁ ॥

ଏ କବିତା ତୁମ ପାଇଁ
ଖାଲି ତୁମରି ପାଇଁ ।

ଆଜି କେହି ପଢ଼ୁ ବା ନପଢ଼ୁ
ଘଡ଼ିଏ ପରେ ସେ ଥାଉ ବା ନଥାଉ
ମୋର କିଛି ଯାଏ ଆସେନି
ତୁମେ ପଢ଼ିଲେ ହେଲା
ସେଇ ମୋର ଢେର ।

ସମୁଦ୍ର ଆକାଶକୁ ଧରି କେତେ ମାଳ ହେଲା
ମେଘ ଆଜି କୁହୁଡ଼ିକୁ ଚିପି ଏ ଶିଖରୀ
ସୂର୍ଯ୍ୟକୁ କେତେ ନଜର କଲା
ଅଦା ବେପାରୀ କାକର ଚୋପା ତା' ଖବର ରଖେନି
ବିନ୍ଦୁଏ ଆକାଶ, ବିନ୍ଦୁଏ ସୂର୍ଯ୍ୟକୁ ଧରି
ମୁହୂର୍ତ୍ତେ ଜଳି ଉଠେ ଆଜି ବିନ୍ଦୁଏ ଅନନ୍ତକୁ
ସେଇ ଜ୍ୱଳନ ଭିତରେ ଧରି ରଖେ । ବାସ୍ ସେତିକି ।

ମୋ' କବିତା ତ
ବେଳା ଭୂଇଁରେ ପାଦ ଚିହ୍ନ ପରି
ଚହଲ ଅନନ୍ତର ସ୍ମୃତିଟିଏ
ପଢ଼ିଲେ କାହାକୁ ପାଇବ ?
ତୁମକୁ; ମୋତେ ନା ସାରା ବିଶ୍ୱ ବ୍ରହ୍ମାଣ୍ଡକୁ ?

ଏ କବିତା ତୁମ ପାଇଁ
ତୁମେ ପଢ଼ିଲେ ହେବ
ସେଇ ଢେର୍ ।



---

ଆକାଶବାଣୀ କଟକ ସୌଜନ୍ୟରୁ

## ।। ସ୍ନେହ କାଙ୍ଗାଳ କବିଟିଏ ମୁଁ ।।

ସ୍ନେହ କାଙ୍ଗାଳ
କବିଟିଏ ମୁଁ
ମୋତେ ଟିକେ ପଢ଼ିବ ?
ଭୁମର କଛୁ ଯିବନ
ଅଥଚ ମୋତେ ସବୁ ମିଳଯିବ ।

ମୋ' କବିତାରେ
ଦର୍ଶନ ଫର୍ଶନ କଛୁ ନାହିଁ
ଇଏତ ଦଡ଼ଏ ଅନ୍ତରଙ୍ଗ ଆଳାପ
ସବୁ କହିଯିବା, ସବୁ ବୁଝି ଯିବାର
ମଞ୍ଜୁ ମାଧବତା ।

ସେଇ ନଡ ଦନଆ କଥା
ସେଇ ପ୍ରଜାପତି, ସେଇ ଫୁଲ
ହସ, କାନ୍ଦ, ଘାସରେ କାକର
ବାସ୍, କବିତା ଆଉ କ'ଣ କ ?
ଏଇ ସବୁକୁ ଆଉ ଥରେ ଦେଖିବା
ଆଉ ଥରେ ଦେଖି ନଜକୁ ଦେଖିବା
ସାରା ବିଶ୍ବକୁ ଡାକିବା ।

ମୋ' କବିତା ତ
ରକ୍ତରେ ମାଞ୍ଜି ଦିଆ
ସଂପର୍କର ଡୋରି
ତୁମ ସହ, ସମସ୍ତଙ୍କ ସହ
ମୋତେ ଯୋଡ଼ି ଦିଏ
ଆଉ ବି ଯୋଡ଼ି ଦିଏ
ମାଟି ସହ ଏ ଆକାଶ ।

ମୋ' କବିତା ତ
ଲୁହ ଆଉ ସ୍ୱପ୍ନ ବୋଳା
ଶବ୍ଦର ଦର୍ପଣଟିଏ
ଯିଏ ମୁହଁ ଦେଖେ
ତାଆର ମୁହଁ ଦିଶେ
ତା'ର ନୂଆ ନୂଆ ମୁହଁ ।

ସ୍ନେହ କାଙ୍ଗାଳ କବିଟିଏ ମୁଁ
ମୋତେ ଥରେ ପଢ଼ିବନି ?



## ॥ ଛତ୍ତୁ ଫତ୍ତୁ ବହୁତ ହେଲା ॥

ଛତ୍ତୁ ଫତ୍ତୁ ବହୁତ ହେଲା
ସେଥିରୁ ଭଲ ଘଡ଼ଏ ମୁକ୍ତ ମିଳନ୍ତା···।

ଏ ଯୁଗ ତ ଚିନ୍ତାର ଯୁଗ, ବୁଦ୍ଧିର ଯୁଗ
ଆମ ମୁଣ୍ଡ ସବୁ
ବର୍ଷା ପରେ ମାଟିବୋଳା ଗୁଆଗଛ ପରି
ସେ ସବୁର ଭାରରେ ଅବନତ ।

ମୋ' କବିତା
ବୋର୍ଡ ଉପରେ ଲକଟା ଝଣ୍ଡା ନୁହେଁ
ଔଷଧ ଖାଇ ଖାଇ
ସେଇ ଔଷଧ ଯୋଗୁଁ
ଝେଙ୍ଗୁଥିବା ରୋଗୀଟିଏ ପାଇଁ
ଅଣ୍ଟୁର କଡ଼ା ଔଷଧ ନୁହେଁ
ସରଳ ପଥ୍ୟର ବ୍ୟବସ୍ଥାଟିଏ ।
ଏହାକୁ ପଢ଼ିଲେ ମୁଣ୍ଡ ଗରମ ହୁଏନି
ହାତ ଉଠେ ଛିଙ୍କେ ଯା' ଚହଲିଯାଏ
ମନ ଚହଲି ଯାଏ ।

ମନ ଚହଲି ଗଲେତ ସବୁ ଚହଲି ଯାଏ
ମୁଣ୍ଡ ଘୂରି ଯାଏ
ଘୂରି ଯାନ୍ତି ସୂର୍ଯ୍ୟ, ଚନ୍ଦ୍ର, ତାରା
ପାଦ ତଳୁ ଭୂଇଁ ଖସି ଯାଏ
ଦୋହଲି ଯାଏ ନଜର ଅସ୍ତିତ୍ୱ
ଅସ୍ତିତ୍ୱ ବିଶ୍ୱ ବ୍ରହ୍ମାଣ୍ଡର
ଆଉ ତା'ର ଭିତରେ ବଞ୍ଚିବାର ମଞ୍ଜିଟି
କେତେବେଳେ ମିଳିଯାଇଥାଏ
ଜାଣି ହୁଏନା ।

ମୋ' କବିତା ତ ଏଇ ଅଜଣା ପାଇବାଟିଏ
ବୁଦ୍ଧିର ଖଣିକୁ ଖୋଳି ଖୋଳି ନୁହେଁ
ପଡ଼ିଆ ପଡ଼ିଥିବା ମନରେ ସ୍ୱପ୍ନର ମଞ୍ଜି ବୁଣି
ଯାହା ମିଳିଥାଏ ତା'ର ପାଇବାଟିଏ ।



ଆକାଶବାଣୀ କଟକ ସୌଜନ୍ୟରୁ

## ॥ କବିତାଟିଏ ଲେଖାହୁଏ ॥

ବ୍ରହ୍ମାଣ୍ଡ ଝଲ୍‌ଝଲେଇବାରୁ ସିନା ବେଦ
ନପଢ଼ି କବିଟିଏ ମୁଁ ଖାଲି କବିତା ଲେଖେ ।

ସାରା ସଂସାରକୁ ତ ଆବୋରି ନେଇଛି
ଭଲ ପାଇବାର ତାରବାଡ଼ରେ ଶୋଇ ପାରୁଛି ଯେ
ସ୍ୱପ୍ନ ଦେଖି ଝଲ୍‌ଝଲେଇବ ।

ତଥାପି ମୋ' ଭିତରେ ଅଜଣା ବ୍ରହ୍ମାଣ୍ଡଟେ ଶୋଇଥାଏ
ସ୍ୱପ୍ନରେ ଝଲ୍‌ଝଲେଇ ସେ ଚମକି ଉଠିଲେ
ଆଉ ଶୋଇ ହୁଏନା କି ସୃଷ୍ଟି ବି ହୁଏନା ।

ଶବ୍ଦ ସବୁ ଘୋଟି ଯା'ନ୍ତି
                    ମେଘ ପରି ଅନ୍ଧାର ପରି
ଶବ୍ଦ ସବୁ ଫୁଟି ଉଠନ୍ତି
                    ତାରା ପରି ଫୁଲ ପରି
ସେମାନେ ଲୁଚକାଳି ଖେଳନ୍ତି
ପିଲାଙ୍କ ଭଳି ପୁଣି ଲୋଟଣି ଭାଙ୍ଗନ୍ତି
ନୀରବତାର କଠର ଶିଖରରେ
                    କାନ ବଧିର କରି ଦିଅନ୍ତି ।

ମୁଁ ଖାଲି ଜନ୍ମ ପାଇଁ ଅଜଣା ପୁଲକରେ
ଆନନ୍ଦରେ ଉଚ୍ଛୁଳ ହୁଏ
ଧରି ନପାରିବାର ଅଜବ ଦୁଃଖରେ ।

ଠିକ୍ ସେତିକ ବେଳେ
ମୋ' ଭିତରେ ବିଶ୍ୱକର୍ମା କେଉଁଠି ଆଏ କେଜାଣି
ଚନ୍ଦ୍ର-ଜନ୍ମ ଶବ୍ଦ ସବୁକୁ ଧରିନେଇ
କେତେ ବାଗରେ ଗୋଟିକ ପରେ ଗୋଟେ ଖଞ୍ଜେ
ଖଞ୍ଜେ, ଭାଙ୍ଗେ ପୁଣି ଗଢ଼େ । ଏଇମିତି କରୁ କରୁ
କ'ଣ ହୋଇଯାଏ ସେ ବିଶ୍ୱକର୍ମା ଜାଣି ପାରେନ
ସେ ବ୍ରହ୍ମା ବି ବୁଝି ପାରେନ ।
ଝିଲ୍ ମିଲେଇବା ବେଦ ପାଇଁ
କବିତାଟିଏ ଲେଖା ହୋଇଯାଏ
ଅକସ୍ମାତ୍ ଧୀରେ ଧୀରେ ।



## ।। ସବୁବେଳେ ଗୋଟିଏ କଥା ।।

ସବୁବେଳେ ଗୋଟିଏ କଥା
ମୋ' ଦେଇ କିଛୁ ହେଲାନି
କବିତା ସାରି ଦେଲି ।

ତୁମର ଦୃଢ଼ ଧାରଣା
କବିତା ପାଲରେ ପଡ଼ିଲେ ଲୋକ ଅକର୍ମା ହୁଏ
ଘର ଦ୍ୱାର, ଛୁଆ ପିଲା ଭୁଲି
ତା'ର ପଛରେ ମାତେ ।

ସାରା ସଂସାର ତ ମୋର
ଧୂଳି ଠାରୁ ପାହାଡ଼, କାକର ଠାରୁ ସାଗର
ସବୁ ମୋ' କଲମ ମୁନରେ ଥୁଆ
ଟୋପାଏ ଲୁହ କେଉଁଠି ଝରିଲେ ମୁଁ ଜଡ଼ସଡ଼ ହୁଏ
ଡାଳଟିଏ କଟାହେଲେ ମୁଁ ଲହୁଲୁହାଣ ହୁଏ
ଫୁଟନ୍ତ ଫୁଲର ରଙ୍ଗରେ ମୁଁ ଉଜୁଳି ଉଠେ, ପୁଣି
ଚଢ଼େଇର ଗୀତରେ ଭରିଯାଏ ମୋ ଛାତିର ସବୁ ନୀରବତା
ତଥାପି ତୁମେ କୁହ ମୋର କିଛି ନାହିଁ
ମୁଁ ଯେ ଧନସ୍ଥାନ କୁବେରଟିଏ
ଏକଥା କ'ଣ ବୁଝ ?

ମୁଁ କ'ଣ ଈଶ୍ୱରଙ୍କ ଫଟୋଗ୍ରାଫର କି
ତାଙ୍କ ସୃଷ୍ଟିର ଫଟୋ ଉଠାଉଥିବି
ମୁଁ କ'ଣ ଈଶ୍ୱରଙ୍କ "ଜୀ ହାଁ" ଲେଖକ
ତାଙ୍କ ସୃଷ୍ଟିକୁ ଅଛି ଭଲ ମାନି ନେବି
ମୁଁ ତ ଦ୍ୱିତୀୟ ଈଶ୍ୱର
ଶବ୍ଦ ଦେଇ ମୋ' ଖୁସିରେ ଏ ସୃଷ୍ଟିକୁ ସଜାଡ଼େ
ଆଉଥରେ ଗଢ଼େ ।
ମୋର ପ୍ରତିଟି ଶବ୍ଦରେ ଅସଂଖ୍ୟ ପୃଥିବୀ, ଅସଂଖ୍ୟ ଈଶ୍ୱର
ମହୁମାଛି ପରି ଝରବଟାର ଗୁଣୁଗୁଣୁ ଗୀତ ଗାଇ ସେମାନେ
ମୋ ସୃଷ୍ଟିର ନାଭି କମଳକୁ ବେଢ଼ିଛନ୍ତି ।

ସେ ନାଭି କମଳରେ ଆଜି କିଏ କି ?
ତୁମେ ତ ।
ଏକଥା କଣ ତୁମେ ବୁଝ ?

ଯିବୁବେଳେ ସେଇ ଗୋଟିଏ କଥା
କବିତା ମୋତେ ସାଥି ଦେଲା ।



## ॥ ତୁମର ଗୋଟିଏ ଠିକଣା ॥

ତୁମର ଗୋଟିଏ ଠିକଣା
ମୋ' ସ୍ମୃତି ।

ସେଦିନ ଫୁଲଟିଏ ପରି
ଦାଉ ଦାଉ ଜଳୁଥିଲ
ତୁମକୁ ବେଢ଼ି ଯାଇଥିଲେ
ଗୁଣୁଗୁଣୁ ମୋ' ସ୍ୱପ୍ନର ମହୁମାଛି ।

ହୁତୁହୁତୁ ଆଜି ବି ଜଳୁଛ
ଫୁଲ ପରି ନୁହେଁ, ଚିତାଟିଏ ହୋଇ
ତୁମକୁ ଘେରିଛି ଖାଲି
ମିଞ୍ଜି ମିଞ୍ଜି ନୀରବ ଅନ୍ଧାର ।

କାଳକୁ ପଚାରିଲି
ହେ କାଳ ! ତୁମେ ପରା ସର୍ବଗ୍ରାସୀ ?
ଅଳ୍ପ ହସି ସେ କହିଲା
"ମୁଁ ସବୁ ଖାଇଯାଏ
କିନ୍ତୁ ସ୍ମୃତିକୁ ନୁହେଁ ।
ସିଏତ ମୋତେ ଖାଇ ବଞ୍ଚେ
ଖାଇ ଖାଇ ବଢ଼େ ।"

ତୁମର ଗୋଟିଏ ଠିକଣା
ମୋ' ସ୍ମୃତି ।



## ॥ ଯଦି ନ ରାଗିବ ॥

ଯଦି ନ ରାଗିବ
ଗୋଟେ କଥା କହନ୍ତି ।

ତୁମକୁ ତ କହିବାକୁ ଡରଲାଗେ
କାହିଁକି ନା କିଛି ଶୁଣିବା ଆଗରୁ
ଗୋଟେ ବଧିଆ ଷଣ୍ଢଟାରେ
ଫଁ କରି ଉଠ ।
ଧୈର୍ଯ୍ୟ ଧରି ଯଦି ଶୁଣିବ
ତେବେ କହନ୍ତି ।

ତୁମେ କ'ଣ ଜାଣି ପାରୁନ
ଆମେ କେମିତି ଘନସ୍ଥ ଭାବରେ
ଦୁହେଁ ଦୁହିଁଙ୍କ ଠାରୁ ଦୂରେଇ ଯାଉଚେ
ମୁକୁଳିବା ଭିତରେ ଦୁଇଟି କଅଁଳ ପତ୍ର ଯେମିତି
ଧୀରେ ଧୀରେ ପରସ୍ପର ଠାରୁ ଦୂରେଇ ଯା'ନ୍ତି
ଠିକ୍ ସେଇମିତି ।

ଆଜି ତୁମ ଆଉ ମୋ' ଭିତରେ
ଅନେକ ନୂଆ ପୃଥିବୀର ମିଠା ଗୁଣୁଗୁଣୁ

ସେମାନଙ୍କ କଅଁଳ କଣ୍ଠ ବାଡ଼କୁ ଡେଇଁ
ତୁମେ ଆଜି ମୋ' ପାଖକୁ ଆସୁନ
ସେଦିନ ପରି ପୂରି ନିଜର କରୁନ ।
ସେଇମାନେ ତ ପ୍ରିୟ ଷଡ଼ଯନ୍ତ୍ରକାରୀ
ଦେଖୁନ କେମିତି
ତୁମକୁ ମୋ ପାଖରୁ ଛଡ଼େଇ ନେଇଛନ୍ତି
ଆଉ ତୁମେ କ'ଣ କହୁଛନା
ଆମକୁ ଅଧିକ ନିବିଡ଼ କରିଛନ୍ତି, ପୂର୍ଣ୍ଣ କରିଛନ୍ତି
ଯେମିତି ଦିଗବଳୟରେ ଆକାଶ ଆଉ ପୃଥିବୀ

ଯଦି ନରାଗିବ କହନ୍ତି...

ଚଢ଼େଇ ପରି
ଥରେ ସେଦିନର ପୃଥିବୀକୁ ଧରି
ଚଢ଼କ ପାଇଁ ଯଦି ଥରେ ମୋ' ପାଖକୁ ଉଡ଼ି ଆସନ୍ତି
ଅପୂର୍ଣ୍ଣତାରେ ପୂରି ଉଠନ୍ତି
ସମୟର ଶକ୍‌କଣ ହାତକୁ ବି ଟିକେ ଟାଣି ଧରନ୍ତି ।

ଯଦି ନ ରାଗିବ
ଗୋଟେ କଥା କହନ୍ତି ।



## ।। ମନେ ଅଛି ନା ! ।।

ମନେ ଅଛି ନା
ପ୍ରଥମ କରି ଯେଉଁଦିନ
ଆମ ଗାଁକୁ ଯାଇଥିଲ ?

ସହରିଆ ଝିଅ ତୁମେ
ଆଖିରେ ଗାଁ ଦେଖିବାର କୌତୂହଳ
କଳୁ ସଞ୍ଜରେ ଯେତେବେଳେ ବିଲୁଆ ଡାକ ଶୁଣିଲେ
ଆଉ ପରେ ପରେ ବର୍ଷା ଆରମ୍ଭ ହେଲା
ପବନରେ ଝୁଲଣର ଉଠିଲା ପଡ଼ିଲା
ଯେତେବେଳେ ବନ୍ଧରେ ପଡ଼ିଥିବା ଗାଁର କଅଁଳ ନବଣ୍ଠା
ତୁମ ଆଖିରୁ ଧୀରେ ଧୀରେ ନିଦ ଆସୁଥିଲା, ନୁହେଁ ?
ତୁମେ ଖୁବ୍ ଡରିଯାଇ କହିଥିଲ
'ଉଃ' ଏଠି ସନ୍ଧ୍ୟା ପ୍ରକୃତରେ ସତ
ଅନ୍ଧାର କେତେ ଅନ୍ଧାର ସତେ !"

ତା'ପରେ ବର୍ଷା ଛାଡ଼ି ଯାଇଥିଲା
କଇଁଫୁଲ ପରି ବଗୁଡ଼ି ହୋଇ ପଡ଼ିଲା ଜହ୍ନଆଲୁଅ
ଅସଂଖ୍ୟ ବେଙ୍ଗଙ୍କ ରଡ଼ିରେ ଶୂନ୍‌ଶାନ୍ ଗାଁ ଲାଗିଲା ଆହୁରି
ଶୂନ୍‌ଶାନ୍

ଯୁଗଯୁଗର ନୀରବତା ସେ ଡାକରେ ଉଚ୍ଛୁଳି ପଡ଼ୁଥିଲା
ଯୁଗଯୁଗର ଶୋକ ଆତୁର ନିଷ୍କମ୍ପ ହୋଇ ଜଳି ଉଠୁଥିଲା
ଦେହର ନଆଁ ଯେମିତି ବାଡ଼ବାଗ୍ନି ପରି ଡେଇଁ ପଡ଼ୁଥିଲା
ଏ ଡାଳରୁ ସେ ଡାଳକୁ
ତୁମେତ ସହସ୍ର ଝିଅ । ବେଙ୍ଗର ରଡ଼ି ଯେମିତି ସେଦିନ
ପ୍ରଥମ ଶୁଣିଲି
ଆଜି ଚୁପ୍‌ଚାପ୍ ଶୋଇ ପଡ଼ିଲ ଅଜଣା ଉପ୍ସୁର ଆନନ୍ଦରେ ।

ସକାଳ ଆସିଲା ଗାଁଉଁଲି ଝିଅଟି ପରି ସରଳ ସୁନ୍ଦର
ରାତାରାତି ଯେମିତି ଗାଁ ଭୂଇଁ ସବୁ ବଦଳି ଯାଇଥିଲା
ଆଜି ରାତାରାତି ତୁମେ ବି ବଦଳି ଯାଇଥିଲ
ପୁଣି ବଦଳି ଯାଇଥିଲ ବର୍ଷା ଭିଜା ଗାଁ ଭୂଇଁ ପରି ।



## ।। କେବେ ତ କିଛି ଦେଇ ପାରିଲିନି ।।

କେବେ ତ କିଛି ଦେଇ ପାରିଲିନି
କ'ଣ ବା ଥିଲା, ମୋର କ'ଣ ବା ଦେବାର ଅଛି
କବିତାଟେ ଲେଖିଛି, ପଢ଼ିବ !

ତୁମେ କିଏ ?
ଡାହାଣୀ, ଶଙ୍ଖୁଣୀ ନା ପିଚାଶୁଣୀ
ମାଲୁଣି ବୁଢ଼ୀ ଅବା କେଉଁ ଅସୁରୁଣୀ
ତୁମେ ଆସିବା ଦିନଠୁ ମୋର ଯେମିତି
କ'ଣ ହୋଇଗଲା, ସବୁ ବଦଳି ଗଲା ।

କି କୁହୁକ କଲ
ସବୁ ଜିନିଷ ଭିନେ ଦିଶିଲେ
ସବୁ ଭିନେରେ ତୁମେ ହିଁ ଦିଶିଲ
କେଉଁ ମିରବତୀର ଏ ଗୁଲୁଗୁଲୁ କଥା
ମୋ' ରକ୍ତରେ ଭରିଲ ।

ଏ କେଉଁ ଦେବା
ଯାହାର ଜିନିଷ ତାକୁ ଫେରାଇ ଦେବା

କେବେ ତ କିଛି ଦେଇ ପାରିଲିନି
କବିତାଟେ ଲେଖିଛି
ଟିକେ ପଢ଼ିବ !



## ।। ଦେଖିଲଣି କେତେ ଫୁଲ ଫୁଟିଛି ।।

ଦେଖିଲଣି, କେତେ ଫୁଲ ଫୁଟିଛି

ଚୂଲ୍ ଫୁଙ୍କୁ ଥିଲେ ଫୁଙ୍କୁ ଥିବ
ତୁମ ବେଳକୁ ତ ଆଉ ତା' ବେଳ ହେବନି
ଏ ଟିକଟିକ ଫୁଲ, ପ୍ରଜାପତିଙ୍କ ଖେଳ
କ'ଣ ସବୁବେଳେ ଥିବ
ଟିକେ ଖାଲି ଦେଖିଯାଅ ।

ସେଦିନ କେତେ ଫୁଲ ରଙ୍କୁଣି ନଥିଲ
ଫୁଲ ଫୁଲ ହେଇ ପାଗଳା କରି ଦେଉଥିଲ
ମୁଁ କିନ୍ତୁ ଫୁଲ ପାଇଁ ବ୍ୟସ୍ତ ନଥିଲି
ତ ତୁମେ ତ ଥିଲ ।

ଏ ପ୍ରଜାପତି ଯେମିତି ସେଦିନର ସବୁ ବାଜେ କଥା
ଏମାନଙ୍କୁ ଦେଖିଲେ ଆଜି ମନ ଚହଲି ଯାଏ
ମଲା ପ୍ରଜାପତିର ଡେଣାକୁ ପିମ୍ପୁଡ଼ି ଟାଣିଲେ
ସେ ଯେମିତି ଟିକେ ଦୋହଲି ଯାଏ
ଠିକ୍ ସେଇମିତି ।

ଦେଖିଲଣି କେତେ ଫୁଲ ଫୁଟିଛି ।



## ।। ଫୁଲଟିକୁ ତୋଳି ନେଲେ ।।

ଫୁଲଟିକୁ ତୋଳି ନେଲେ
କିମ୍ବା ପ୍ରଜାପତିକୁ ଧରିଦେଲେ
ସବୁ କେମିତି ବଦଳି ଯାଏ
ଫୁଲ ଆଉ ଫୁଲ ହୋଇ ରହେନି
ପ୍ରଜାପତି ବି ତାର ପ୍ରଜାପତିତ୍ବ ହରାଏ ।

ତୁମେ ପରା ଫୁଲଟିଏ, ପ୍ରଜାପତିଟିଏ
ସେଇଥି ପାଇଁତ ମୋର ଏତେ ଶଙ୍କା, ଏତେ ଭୟ
ଧରିଦେଲେ କାଳେ ତୁମେ ଆଉ ତୁମେ ହୋଇ ରହିବନି
ସବୁଦିନ ଲାଗି ହରାଇ ବସିବ ।

କିନ୍ତୁ ସେଦିନ ଯେ ତୁମେ
ବାହୁ ଫାଶରେ ମୋ' ଧରା ଦେଇ
ଫୁଲଟିଏ ପରି ଫୁଟି ଉଠିଲ
ପ୍ରଜାପତି ପରି ନାଚିଗଲ
ଅହ୍ଲାଦ ରଙ୍ଗରେ, ନିଥର ଚପଳତାରେ ।
ତୁମେ କ'ଣ ଫୁଲ ନୁହେଁ, ପ୍ରଜାପତି ନୁହେଁ ?
ତେବେ ତୁମେ କିଏ ? କିଏ ତୁମେ ?

ହସିହସି କହୁଥିଲା
'ମୁଁ ଫୁଲ ନୁହେଁ, ପ୍ରଜାପତି ନୁହେଁ
ମୁଁ ପରି ମୁଁ । ତୁମେ ଧରିଦେଲେ
କମ୍ପା ତୋଳି ନେଲେ ଯାଇ
ମୁଁ ଫୁଲ ହୁଏ, ପ୍ରଜାପତି ହୁଏ ।'



## ॥ ଦେଇଥିବା କଥା ସବୁ ॥

ଦେଇଥିବା କଥା ସବୁ ଭୁଲିଗଲା ପରେ
ଦେଖିଥିବା ସ୍ୱପ୍ନ ସବୁ ଭାଙ୍ଗିଗଲା ପରେ
ଉଜାଗର ରାତି ରହିଯାଏ, ତୁମେ ରହିଯାଅ ।

ଏତେ କଥା ଦେବାକୁ ତ କହିନଥିଲି
କହିବି ନଥିଲି ମୋତେ ନେଇଯାଅ ସ୍ୱପ୍ନ ରାଇଜକୁ
ସେଦିନର ସ୍ମୃତି ଭିତରେ ଶିଶିରସିକ୍ତ ସୂର୍ଯ୍ୟ ତୁମେ ନଥାଇ
ବି ଥିଲ
ଆଉ ଚୁମ୍ବିତ ଅଧରର କୁମାରୀ କମ୍ପନ ପରି
ଏକ ଅପୂର୍ବ ଶୂନ୍ୟତାରେ ମନ ଭରି ଦେଇଥିଲ ।

କେତେ ଆଶାରେ କାନ୍ଥରେ ଉଠିଥିବା ବଟ ବୃକ୍ଷଟି ପରି
ତୁମକୁ କୋଳେଇ ଥିଲି । ସବୁଜର ସ୍ୱପ୍ନ ଦେବ, ଛାଇର
ଶୀତଳତା ଦେବ
ମୁଁ କ'ଣ ଜାଣିଥିଲି ଏ ମାୟାବୀ ଆଶ୍ଳେଷ ଏତେ ନିବିଡ଼ ଯେ
ଦେଖିଥିବା ସ୍ୱପ୍ନ ପରି, ଦେଇଥିବା କଥା ପରି
ମୋତେ ବି ଖଣ୍ଡ ବିଖଣ୍ଡ କରି ଦେବ
ଶିରା ପ୍ରଶିରାରେ ଦୁରନ୍ତ ହୋଇ ସେ ପଶିଯିବ ଆଉ
ମରୁଭୂମିର ପୂର୍ଣ୍ଣତାରେ ସବୁ ଶୂନ୍ୟ କରିଦେବ ।

ଦେଇଥିବା କଥା ସବୁ ଭୁଲିଗଲା ପରେ
ଦେଖିଥିବା ସ୍ୱପ୍ନ ସବୁ ଭାଙ୍ଗିଗଲା ପରେ···



## ।। ସବୁବେଳେ ଗୋଟିଏ ପ୍ରାର୍ଥନା ।।

ମୁଁ ତୁମର
ମନେ ପଡ଼େ ନା ନାହିଁ ଜାଣେନି
ମୋ' ପାଖରେ କନ୍ତୁ
ମନେ ପଡ଼ିବାର ପ୍ରଶ୍ନ ଉଠେନି
ତୁମେ ତ ସବୁବେଳେ ମନରେ ଥାଅ

ତୁମେ କ'ଣ ଢେଉଟିଏ ନା ଝଡ଼ଟିଏ ଯେ
କ୍ଷଣକ ପାଇଁ ଉଠି ଗୁଡ଼ିଯିବ । ତୁମେ କ'ଣ
ସୂର୍ଯ୍ୟଟିଏ ନା ଜହ୍ନଟିଏ ଯେ ଉଦୟ ହୋଇ ଅସ୍ତଯିବ
ତୁମେ ତ ଆକାଶ, ତୁମେ ତ ସମୁଦ୍ର
ଗୋଟେ ସବୁଦିନ, ସବୁବେଳ ।

ସବୁବେଳେ ଗୋଟିଏ ପ୍ରାର୍ଥନା
ତୁମ ସାଥିରେ କେବେ ଦେଖା ନହେଉ
ସବୁଦିନ ତୁମେ ରହିଥାଅ
ସ୍ବପ୍ନର ନବଡ଼ ଫଗୁଆ ଭିତରେ
ଦୂରର ଅଙ୍ଗନାଭି କୁହୁକ ଭିତରେ ।

ସେଠି କ'ଣ ଚନ୍ଦ୍ରକୁ କାଳ ଛୁଇଁ ପାରବ ?
କାଳ ସିନା ଆଖିକୁ ଚାଢ଼ନଏ, ନଦକୁ ନୁହେଁ
ମୋତେ ସିନା ଖାଇଯିବ, ସ୍ମୃତିକୁ ନୁହେଁ ।

ସେଇଥି ପାଇଁ ତ ଗୋଟିଏ ପ୍ରାର୍ଥନା
ତୁମ ସାଥିରେ କେବେ ଦେଖା ନହେଉ
ଦେଖା ହେଲେ ଯେ ଚନ୍ଦ୍ରକୁ ମୁଁ ଦେଖି ପାରବନ
ଆଉ କେବେ ପାଇ ପାରବନ ।



## ।। ରାଗିଲେ କ'ଣ ହେବ ।।

ଆଜ ରାଗିଲେ କ'ଣ ହେବ
ତୁମେ ତ କବିତା ଲେଖା ଶିଖେଇଲ

ମନେ ଅଛିନା
ଚୁପ୍‌ଚୁପ୍ ମୋ' ଖାତାରୁ କବିତା ପଢ଼ୁଥିଲ
ଆଉ ଖାଲି ତୁମେ ପଢ଼ିବ ବୋଲି ମୁଁ ଲେଖୁଥିଲି
ଜହ୍ନ ଉଇଁଲେ କଇଁ ନଫୁଟି କ'ଣ ରହିପାରିବ ?

ଜହ୍ନ କିନ୍ତୁ ଭଲ ପାଉଥିବାର
ସମୁଦ୍ରରେ ଯେ ଜୁଆର ଆଣେ
କଇଁ ପାଇଁ ତାର ଯାଏ କେତେ ଆସେ କେତେ ?
ଜହ୍ନ ଜଉ୍ଡ଼ୁବୁଡ଼ୁ କଇଁ କିନ୍ତୁ ନାଚୁର
ଫୁଟିବାକୁ ବାଧ୍ୟ ।

ତୁମେ କେମିତି ଜାଣିବ
କବିତାଟିଏ ପାଇଁ ମୁଁ କେତେଥର ବଞ୍ଚେ
କେତେଥର ମରେ । କେଉଁ ସନ୍ୟାସ ଆସକ୍ତିରେ
ଜଳପୋଡ଼ ପାଉଁଶ ହେଇଯାଏ ।

ଆଜ ରାଗିଲେ କ'ଣ ହେବ
ତୁମେ ତ କବିତା ଲେଖା ଶିଖେଇଲ ।



## ।। ସେଦିନର ଜହ୍ନ ତୁମେ ।।

ସେଦିନର ଜହ୍ନ ତୁମେ
ତୁମରି ଛବିଟା ତ ଜହ୍ନବତି ମୋର ।

ତୁମେ ତ ଛୁଆଙ୍କଠୁ ବଳି
ଜହ୍ନ ପାଇଁ ଅଳି କରୁଥିଲ
ମଥାର ମଣି କରିବାକୁ, ଗଳାର
ହାର କରିବାକୁ ପୁଣି କୋଳରେ ଧରି
ଗେହ୍ଲା କରିବାକୁ ଖାଲି ଜିଦ କରୁଥିଲ ।

ଶୁଖିଲା ଜହ୍ନ ତୁମ ମୁହଁକୁ ଦେଖି
ଜହ୍ନ ପାଇଁ ହାତ ବଢ଼ାଇଲେ
ହସିହସି କହୁଥିଲ "ଆଉ ଥାଉ ବହୁତ ହେଲା
ଜହ୍ନ କ'ଣ ଗଛର ଫଳଟିଏ ଯେ ତୋଳି ଆଣିବ
ପୋଖରୀ ମଝିରେ କଇଁଟିଏ ଯେ ପହଁରି ଯିବ
ନହାତ ବୋକା ତୁମେ, ଅଜଯାଏ କିଛୁ ଜାଣିଲନି
ଚହ୍ନ ଚହ୍ନିଲନି, ଜହ୍ନ ବୁଝିଲନି
ଧିକ୍ ତୁମ କବିତା ଲେଖାକୁ ।"

ଆଃ !
ଏ ଜହ୍ନ ଦେଖି ନଥିବା ସ୍ୱପ୍ନଟେ ଯେମିତି
ଯେମିତି ପରିଚିତ ଅଜ୍ଞାତଟିଏ ।

ସେଦିନର ଜହ୍ନ ତୁମେ
ତୁମର ଚନ୍ଦ୍ରାତ ଜହ୍ନରାତି ମୋର ।



## ।। କଥା ଦେଇଥିଲ ନା ।।

କଥା ଦେଇଥିଲ ନା
କବିତାଟିଏ ଲେଖିଲେ ଚୁମାଟିଏ ଦେବ
ଚୁମା ନଦେଲ ନାହିଁ
କାହିଁକି କବିତା ଛାଡ଼ିଲି !

ବାଲିଘର, ଧୂଳିଖେଳ ପରି
ସେଦିନର କଥା ଖାଲି ମିଛ ପିଲା ଖେଳ
ସେସବୁ ଭାଙ୍ଗିଲେ ଯାଇ ସତର ଆରମ୍ଭ ।

କବିତା ତ ମିଛ ପାଇଁ ମିଛ କଥା ଦେବା
ମିଛର କସ୍ତୁରୀ ଗନ୍ଧେ ମିଛେ ମିଛେ ଭୁଆଁ ବୁଲି ହେବା
ସ୍ୱପ୍ନ ପାଇଁ ନିଦକୁ ଭାଙ୍ଗିବା, ରାତିକୁ ଭୁଲିବା ।

କବିତା ଭୁଲି ଆଜି ତୁମେ ସତକୁ ପାଇଛ
ମୁଁ କିନ୍ତୁ ମିଛ ପଛେ ଧାଇଁ ତୁମକୁ ପାଇଛି
କବିତା ପାଇଛି ।

କଥା ଦେଇଥିଲ ନା
କବିତାଟିଏ ଲେଖିଲେ
ଚୁମାଟିଏ ଦେବ ।



## ॥ ଚାଲି ଗଲନି ଯେ ॥

ଚାଲି ଗଲନି ଯେ
ଆସିବ ଆସିବର ଆଶାଟିଏ ହୋଇ
ରହିଗଲ ।

ସେଇ ଦିନଠୁ ଚାହିଁଛି
ଚୁପ୍‌ଚାପ୍ କେତେବେଳେ ଆସି
ପଛରୁ ଆଖି ବୁଜି ଧରିବ
କହିବାକୁ ପଡ଼ିବନି
ତୁମ ଶୀତଳ ହାତର ଉଷୁମ୍‌ରୁ ଜାଣିନେବି
ଠିକ୍ ଚିହ୍ନି ପାରିବି ।

ହାଉ ହାଉ ଅନ୍ଧାରଟିଏ ତ ତୁମେ
ତୁମ ପାଖରେ ଆଖି ଜଳକା ମାରିଯାଏ
ତୁମକୁ, ନିଜକୁ ନା ଆଉ କାହାକୁ କ'ଣ ବାରିହୁଏ
ନା ଜାଣିହୁଏ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ?

ସେଇ ଦୁକୁଦୁକୁ ଅନ୍ଧାରକୁ ଧରି
ସଞ୍ଜର ଫୁଲଟି ପରି କୁହୁଳି ଉଠିଛି

ତୁମ ସୁଲୁ ସୁଲୁ ଶୂନ୍ୟତାରେ ସ୍ପନ୍ଦନ ପରି
ଆଉଥରେ ସାଉଁଳି ଦେବନି ?
ଦେଖିବ କେମିତି
ଜଳ ଉଠିବ, ନାଚ ଉଠିବ
ନୂଆ ଅନ୍ଧାରରେ, ନୂଆ ନଥରତାରେ ।

ତୁମ ଗଲନି ଯେ
ଆସିବ ଆସିବର ଆଶାଟିଏ ହୋଇ
ସବୁଦିନ ରହିଗଲ ।



## ।। ସେଇ ଯେ ଗଲା ।।

ସେଇ ଯେ ଗଲା ଆଉ ଫେରିଲାନି ।

ତୁମକୁ ଝୁରି ଝୁରି
ନିଦ ଭୁଲିଲି, ଦିନ ରାତି ସବୁ ଭୁଲିଲି
ଶେଷରେ ଭୁଲିଲି ସବୁ ଭୁଲିଯିବା
ଭୁଲି ଗଲାନି ଯେ ସ୍ମୃତିରେ ପଥର ହୋଇ ରହିଗଲେ ।

ସବୁ ମନ୍ଦିରର ମୂର୍ତ୍ତିଙ୍କୁ ମୋର ଖାଲି ଗୋଟିଏ ପ୍ରଶ୍ନ
କେବେ ସେ ଆସିବ ?

ପ୍ରଶ୍ନ ଶୁଣି ସେମାନେ କହନ୍ତି
ସ୍ୱପ୍ନ ଥରେ ଭାଙ୍ଗିଲେ ସତ ପାଲଟେ
ସତ ପାଲଟିଲେ ସ୍ୱପ୍ନକୁ ତ ଆଉ ଦେଖି ହୁଏନି
ଭଙ୍ଗା ବୋତଲ ପରି ଧାରୁଆ ସେ ଖାଲି ଲହୁଲୁହାଣ କରେ ।

ସେଇ ଯେ ଗଲା ଆଉ ଫେରିଲାନି ।



## ।। କହିବି କହିବି ହୋଇ ।।

କହିବି କହିବି ହୋଇ କହି ପାରିଲିନି
ସବୁ ଅକୁହା ରହିଗଲା

ତୁମେ ତ ଦୂରୁ ଦୂରୁ ନୀରବ ଡାକଟିଏ
ତୁମ ପାଖକୁ ଖାଲି ଧାଇଁ ଆସି ହୁଏ
କିଛି କହି ହୁଏନି ।
ଫୋକ କ'ଣ ନିଆକୁ କିଛି କହେ ?
ଦର୍ପଣରେ ଜହ୍ନ ପରି ମିଛ ମିଛ ସତ ଟିଏ ହୋଇ
ମୋ' ସ୍ମୃତିରେ ସବୁ ଦିନ ରହିଗଲା

ଯଦି କହି ପାରି ଥା'ନ୍ତି
ସ୍ମୃତିରୁ ବୋହି ଯାଇ ଥା'ନ୍ତା
କିନ୍ତୁ ବୋହି ଗଲେ ଆଉ କ'ଣ ରହନ୍ତା ଯେ ।

କହିବି କହିବି ହୋଇ କହି ପାରିଲିନି
ସବୁ ଅକୁହା ରହି ଗଲା ।



## ।। ଅଦେହୀ ।।

ତୁମ ମୁହଁରେ ସୂର୍ଯ୍ୟାସ୍ତର ଧାସ
ଆଖିରେ ସନ୍ଧ୍ୟା ତାରାର କାନ୍ତି ପୁଣି
ତୁମ ବକ୍ଷ ଯେମିତି ଏକ ଝଡ଼ କ୍ଷେତ୍ର ସମୁଦ୍ର ।

ଯେଉଁ ମୁହୂର୍ତ୍ତରେ ଜଳିଗଲି ତୁମର ଏ ଆଖିର ଶିଖାରେ
ଯେଉଁ ମୁହୂର୍ତ୍ତରେ ବୁଡ଼ି ଗଲି ଦେହର ଏ
ପାଗଳ ଉଚ୍ଛ୍ୱାସ ଭିତରେ
ସେଇ ମୁହୂର୍ତ୍ତରେ ପାଇଲି ଯେ
ଦିବ୍ୟଚକ୍ଷୁ ଚକ୍ଷୁହୀନତାର
ପୁଣି ଅଚଳାଚଳ କୁବେର ପୂରି ମହା ଶୂନ୍ୟତାର ।

ନଆଁର ଅନ୍ଧାର ଭେଦି ଏ ଚକ୍ଷୁ
ଦେଖାଇ ଦେଲା ଏକ ପୁଷ୍ପିତ ଉପତ୍ୟକା
ଉଚ୍ଛ୍ୱାସର ପ୍ରଶାନ୍ତି ଭେଦି ଏ ଦେହ
ଶୁଣାଇ ଦେଲା ଏକ କାକଳୀତ ନୀରବତା

ଏ ଉପତ୍ୟକା ତୁମ ମନ
ଏ ନୀରବତା ତୁମ ପ୍ରେମ
ଆଜି ତୁମେ
ଏକ ଦେହ ହୀନ ଦେହ ।



## ॥ ବିବାହ ବାର୍ଷିକୀ-୧ ॥

ଅନେକ ଦିନ ଗଲେ, ଅନେକ ଯୁଗ ଗଲେ
ଏହି ଦିନ ଏକ ହୋଇଥିଲେ । ତୁମ ଆଖିରେ
ଅନେକ ସ୍ୱପ୍ନ, ଓଠରେ ଅନେକ ବସନ୍ତ
ଏ ମିଳନ ଯେମିତି ସ୍ୱପ୍ନର ପ୍ରଥମ ପାଣ୍ଡୁଲିପି
ବନ୍ଧୁ ବାନ୍ଧବୀ ଘରେ ଧାଇଁ ଧାଇଁ ଜୀବନ ଜଳିଗଲା
କୁଆଡ଼େ ହଜିଗଲା କେଜାଣି ସେଦିନର ସେ ପାଣ୍ଡୁଲିପି ।

ଆଜି ବି ସେଦିନ ପୁଣି ଆସିଛି । କୋକିଳ, ମହୁମାଛି
ଆଉ ଗୁଞ୍ଜନ ଧରି ବସନ୍ତ ଆସିଛି । ଏ ମହକରେ
ଆଜି କେଉଁ ଯୋଡ଼ା ଗନ୍ଧ, ଏ ଗୁଞ୍ଜନରେ କେଉଁ
ଶୂନ୍ୟତାର ଛନ୍ଦ । ଆଜି ଆମେ ଯେମିତି
ସକାଳର ନିସ୍ତବ୍ଧ ବଣଖଣ୍ଡ ପା' ମୂଳରେ ଖୋଜି
ବୁଲି ବୁଲି ସ୍ୱପ୍ନର ମୃତ ଝିଙ୍କିପୋକ ।

ଡାହୁକର ନିଃସଙ୍ଗ ବିଳାପ ପରି ଆମ ଭିତରେ ବି
ଏ ଦିନଟି ହଜିଯିବ । ବହୁବାର ଫେଣ୍ଟିଆ ଭୂତ ସ୍ୱପ୍ନର
ସବୁ କାଠି କୁଟାକୁ ଉଡ଼ାଇ ନେଇ ଚୁପ୍‌ଚାପ୍‌ ଥମିଯିବ ।

ଏକାନ୍ତ ଆମର ଏ ଦିନଟି ଏକ ପ୍ରଲମ୍ବିତ ବିଫଳତାର
କରୁଣ ଗୌରବ ଭାବେ ବାରମ୍ବାର ଆମକୁ ଦଗ୍ଧ ଯାଉଥିବ ।

ତଥାପି ଏ ପଞ୍ଜଷ ମନରେ ଏ ଦିନଟି ଏକ ବଳୁଳନ୍ତ ଆମ୍ବଗଛ
ପ୍ରଜାପତିର ଇନ୍ଦ୍ରଧନୁ । ଆଜି ଆମ ବାର୍ଷିକୀ ପାଳିବା ଯେମିତି
ଏକ ଅସମ୍ଭବ ଅଙ୍ଗୀକାର, ଏକ ପ୍ରତ୍ୟାଶାହୀନ ପ୍ରତ୍ୟୟ ।



## ॥ ବିବାହ ବାର୍ଷିକୀ-୨ ॥

ପୁଣି ଥରେ ଚକ ଘୂରିଗଲା
ବାର ହାତ ଗଡ଼ିଗଲୁ ଆମେ
ବାର ହାତ ଗଡ଼ିଗଲା ଆମର ପୃଥିବୀ
ସେଦିନଟି ପୁଣି ଆସିଗଲା ।

ସ୍ୱପ୍ନର ଏ ଦିନଟି ଅଦ୍ଭୁତ ଦିଗନ୍ତଟିଏ
ଦୂରକୁ ଦୂରକୁ ଗଲେ ପାଖେଇ ସେ ଆସେ
ପରିଚିତ ନୂତନତା ଧରି ଆମକୁ ନଜର କରେ
ଆଲ୍‌ବମ୍‌ର ପ୍ରଥମ ପୃଷ୍ଠାକୁ ଆମ ଆଗେ ଓଲଟାଇ ଦିଏ ।

ଧୂଳି, ବୁଢ଼ିଆଣୀ ଜାଲି ଆଉ ହଳଦିଆ ପତ୍ର ଗହଳରୁ
ଏ ଦିନଟି ହଠାତ୍ ଉକୁଟି ଉଠେ, କବାଟ ଫାଙ୍କରେ ଲୁଚି
ଯାଇଥିବା
ପ୍ରଜାପତିଟି ପରି, ପାଣ୍ଡୁର ଗାଲରେ ଶୁଖିଲା ଲୁହ ଦାଗ ପରି ।
ମନେ ପଡ଼େ ଘର କୋଣରେ ସେ ନିଷ୍ପ୍ରଭ ଦୀପ—
ତୁମ ଆଖିରେ ପ୍ରଜାପତି ପରି କଂପୁଥିବା ସେ ନିଷ୍ପ୍ରଭ ଦୀପ
ଆଉ ସେ ନୀଳ ଆଖି ଯହିଁରୁ ସ୍ୱପ୍ନ ସବୁ, ସମ୍ପର୍କ ସବୁ
ଲୁଆଁ ମେଲୁଥିଲେ, ଲଟେଇ ଯାଉଥିଲେ ଦେହରୁ ଦେହକୁ
ମନରୁ ମନକୁ ।

ଆଜ ପୁଣି ସେଇଦିନ ଜନ୍ମ୍ ଲଗ୍ନ ମନକୁ ମାଜ ମାଜ
ଉଜ୍ଜ୍ୱଳ କରେ
ମଥାରେ ରଙ୍ଗ ଲେପି ପଡ଼ଲା ବାଳକୁ କୁଣ୍ଡାଇ ଦିଏ ।
ସମ୍ପର୍କର ଗହଳ ଗଛରେ
କେତେ ଫୁଲ, କେତେ ଫଳ, କେତେ ଛୁଇ, କେତେ ଯେ କାକଳୀ
ତା'ର ଭିତରେ ଦରଣ୍ଡି ବୁଲୁ ଅ୍ଲ୍‌ବାମ୍‌ର ପ୍ରଥମ ପୃଷ୍ଠାର
ଆମକୁ,
ଗଜୁଷ ଉଠୁଥିବା ସେ ଦିନର କଣଲପ୍ପକୁ । ଆଉ ଖୋଜ ଖୋଜ
ହଜଯାଉଁ
ଏଇ ହଜବା ଭିତରେ, ପାଇ ପାଇ ଭୁଲିଯାଉଁ ଏଇ ପାଇବା
ଭିତରେ ।
ଯେମିତି ଶିଖାଟିଏ ହଜଯାଏ
ଜଳବା କୋଳରେ, ଫୁଲଟିଏ ହଜଯାଏ ଫୁଟିବା ଡାଳରେ ।

ଏ କେଉଁ କାକଳୀ ? ଏ କେଉଁ ପ୍ରଭାତ ?
ମାଳ ଆଖିରେ ଏ କେଉଁ ପ୍ରଦୀପ ? କେଉଁ ଫୁଲ, କେଉଁ ଛୁଇ ?
ହଳଦିଆ ପତ୍ରରେ ଏ କେଉଁ ସବୁଜ ?
କେଉଁ ଆମେ ଆଜ
କେଉଁ ତୁମେ
କେଉଁ ମୁଁ ?



## ।। ବିବାହ ବାର୍ଷିକୀ-୩ ।।

ରାତି ପାହିଲେ ସେଇ ଦିନଟି
ସେଇ ଚିର ଇପ୍‌ସିତ ଭୟଙ୍କର ଦିନଟି
ମଧୁର ସ୍ୱପ୍ନ ପରି ଦେଇଯିବ
ଖାଲି ଦୀର୍ଘଶ୍ୱାସର ଭେଟି ।

ଏଇ ଦିନଟିରେ ଘଣ୍ଟା କଣ୍ଟା ଜୀବନ ଘଡ଼ିଏ ଅଟକି ଯିବ
ସ୍ମୃତିର ଖଣ୍ଡରେ ମନ ଲୋଟଣି ଖାଇବ, ତ୍ରେଣାରେ
ଅଜାଡ଼ି ପଡ଼ିବ
ଆକାଶର ନେଳି ଆଉ ଚକ୍‌ଚକ୍ ଖରା । ହଇଚଇ ସଂସାର
ପାଖରୁ
ଚୋରାଇ ଆଣିଥିବା ଲାଜ ସଢ଼ସଢ଼ ଟିକେ ନିର୍ଜନତା ଭିତରେ
, କିଛି ମନେ ପଡ଼ିବନି, କିଛି ଭୁଲି ହେବନି, କିଛି ସ୍ୱପ୍ନ ବି
ଦେଖି ହେବନି
ଦୁହେଁ ଦୁହିଁଙ୍କ ପାଖରେ ଖାଲି ସ୍ମୃତିଟିଏ, ଖାଲି ଭ୍ରାନ୍ତିଟିଏ
ଆଃ ! ଦୀର୍ଘଶ୍ୱାସଟିଏ ହୋଇଯିବା ।

ଏଇ ଦିନଟି ଆମପାଇଁ ସେଦିନ ଆଣିଥିଲା
କେତେ ନ ଦେଖିଲା ସ୍ୱପ୍ନର ସ୍ୱପ୍ନ । କେତେ ରହସ୍ୟର ସତ୍ୟ

କିନ୍ତୁ ସତ୍ୟର ରହସ୍ୟ ଭିତରେ ସବୁ କେମିତି ହଜିଗଲା
ଯେମିତି ଖବର ଅନ୍ଧାର ଭିତରେ ହଜିଯାଏ ଜହ୍ନରାତିର ମାୟା ।

ସାର୍ଥକତାର ତୃପ୍ତି ନୁହେଁ, ଅପୂର୍ଣ୍ଣତାର ହାହାକାରରେ
ସଢ଼ୁଥିବା ପୂଜାଫୁଲ, ଆମ ଦୁହିଁଙ୍କ ପାଇଁ ଏ ଦିନଟି କିନ୍ତୁ
ସବୁଦିନ ସେଇ ଫୁଲଫୁଟିବାର ବେଳ, ଯହିଁରେ ଛପିଥାଏ
ଶିଶିର, ଖସି ଆଉ ଝଳ ପାଇଁ ଏକ ଶଂକ୍ଷୁଭିତ ସ୍ୱପ୍ନ
ଆଜି ସନ୍ଧ୍ୟାର ରଙ୍ଗୀନ ମରିବତା ପାଇଁ ଏକ ମଳିପ୍ତ
ବ୍ୟାକୁଳତା ।



## ।। ସଂଧ୍ୟା ।।

ପଶ୍ଚିମ ଯେ ଲାଲ୍ ହୁଏ, ଲମ୍ବି ଯାଏ ଛାଇ
ଛରିଆଡ଼େ ମୁଖରିତ ନୀରବତା
ଅନ୍ଧକାର ଧୀରେ ଆସେ ନଇଁ...

ସୂର୍ଯ୍ୟ ବୁଡ଼ିଯାଏ ଖାଲି ସ୍ମୃତିଟିଏ ପରି
ରାତ୍ରି ଆସେ ଦୀର୍ଘଶ୍ୱାସ ହୋଇ
ଅଳ୍ପ ପୂର୍ଣ୍ଣତା ଯେତେ ମିଟିମିଟି ତାରା
ଛୁଟନ୍ତି ଦୁକୁ ଦୁକୁ କେଉଁ ଶୂନ୍ୟତା ପାଇଁ ?

ଶୂନ୍ୟତା 'ପାଜ୍କସ୍ ଗାଈର ପାଟିରେ
ଶୂନ୍ୟତା ବଳଦର କ୍ଳାନ୍ତ ପାଦରେ
ଶୂନ୍ୟତା ଛଟପଟ ମାଛଟି ଆଖିରେ
ଆଃ ! ଶୂନ୍ୟତା ବ ମନ୍ଦରର ଘଣ୍ଟ ଧ୍ୱନରେ !

ଜାଲରେ ଶୂନ୍ୟତାକୁ ଛାଣି ନେଲା ପରେ
ଗାଡ଼ରେ ଚଢ଼ି ଖେଦଗଲା ପରେ
ଶୂନ୍ୟତାର ମଃଇଲ

କେଉଁ ଶୂନ୍ୟତାର କଥା କହେ ଏ ନୀଳ ଆକାଶ
କାକଳୀତ ଏ ନୀରବତା, ସଞ୍ଜୁଆ ବତାସ ?

କେଉଁ ନୀଳର ଉଦୟ ଏ କେଉଁ ଅସ୍ତାଚଳ
ଜ୍ୱଳନ୍ତ ସୂର୍ଯ୍ୟର ଏ ଯେ ଅନ୍ଧାରତ ଖେଳ
ଅଜଣା ଅନ୍ୱେଷା ଇଏ ଚିର ଚିହ୍ନାଚିର
ତୁମର ଓ ମୋର



## ॥ ପୋଲ ॥

ପୋଲ ଯୋଡ଼ିଦିଏ ନଈର ଦୁଇଧାର ।

ତୁମ ଓ ମୋ' ଭିତରେ
କେତୋଟି ଦୀର୍ଘଶ୍ୱାସର ପୋଲ
ବର୍ତ୍ତମାନର ବର୍ତ୍ତମାନତାରେ ଟଳଟଳ ।

କିନ୍ତୁ ବୁବୁ ପୋଲ ହୋଇ
ଅନନ୍ତ ଭବିଷ୍ୟତ ସହ
ଆମ ଦୁହିଁଙ୍କୁ ଯୋଡ଼ିଦିଏ
ଚପଳ କାଳର ଚିରନ୍ତନତାରେ ଦୃଢ଼ ।

ପୋଲ ଯୋଡ଼ିଦିଏ ନଈର ଦୁଇ ଧାର ।



## ।। ପ୍ରାପ୍ତି ।।

ଯନ୍ତ୍ରଣାର ଝାଁପାଖାଟା ଏ ଦେହକୁ ଧରି
ଆଶା ଆଉ ଆଶଙ୍କା ସହ ଅନ୍ଧପୂଚୁଲି ଖେଳିଲି ।

ତୁମେ ଆଶା ନୁହଁ
ଆଶଙ୍କା ବି ନୁହଁ
ବର୍ଷାର ପୃଥିବୀ ପରି ଏକ ସବୁଜ ପ୍ରାପ୍ତି
ତାରକିତ ଆକାଶ ଭଳି
ଏକ ଅପୂର୍ବ ପୂର୍ଣ୍ଣତା ।

ହେ ଅନ୍ନପୂର୍ଣ୍ଣା ! ମୋତେ ନଜର କର
ପ୍ରଶରୀ ଯେମିତି ବୁଡ଼ନ୍ତ ସୂର୍ଯ୍ୟକୁ
ଅବା ପଦ୍ମର ମୁଦ୍ରିତ ପାଖୁଡ଼ା
ଯେମିତି ନଜର କରେ ପାଗଳ ଅଳିକୁ ।
ଠିକ୍ ସେଇମିତି ମୋତେ ଆପଣାର କର ।



## ।। ମାନସୀ ।।

ତୁମ ଅନୁପସ୍ଥିତି ଶୂନ୍ୟତା
ତୁମ ସ୍ମୃତି ଜ୍ୱାଳା
ଏଇ ଶୂନ୍ୟତାର ଜ୍ୱାଳା ହିଁ ପ୍ରେମ
ତୁମେ କିଏ ମାନସୀ ?



## ।। ତୁମର ଆକାଶେ ।।

ତୁମର ଆକାଶେ
ଆଜି ସିନା ଏକ ଦିନର ଜହ୍ନ
ମଳିନ ପୁଣି ମୂଲ୍ୟହୀନ
କିନ୍ତୁ ଦିନେ
ଭେଦି ତୁମ ଆକାଶର ନେଳ
ଉଇଁଥିଲା ଆଉ ମୋ' ସ୍ନିଗ୍ଧ କିରଣ
ତୁମ ତାରକିତ ଦେହ ଛୁଇଁଥିଲା
ଛଇଳ ଚପଳ ମନରେ ଜୁଆର ଆଣିଥିଲା
ଏକଥା ମୁଁ ଜାଣେ, ତୁମେ ବି ଜାଣ ।



## ॥ ସ୍ମୃତି, ବିସ୍ମୃତି ॥

ବିସ୍ମୃତିର ଅନ୍ଧାର ଗଳିରେ
ସ୍ମୃତିର ଦୁଇଟି ବର୍ଣ୍ଣଖଣ୍ଡ
ଗୋଟିଏ ତୁମ ପରିଚୟ
ଅନ୍ୟଟି ବିଦାୟ ।



## ॥ ଗୋଲାପ ॥

ଏ ଗୋଲାପଟିରେ ତୁମ ଓଠର ରଙ୍ଗ
ଆଉ ସେ ଓଠରେ ଯେ ମୋହର ରକ୍ତ

ଏ ଫୁଲକୁ ମଥାରେ ଖୋସିବା ଆଗରୁ
ହେ ପାଞ୍ଚସେନୀ ! ଥରେ ଭଲକରି ଭାବ
ସଉକ୍‌ରେ ମୋ' ରକ୍ତକୁ ଆଜି
ତୁମ କବରୀରେ ନେସୁନ ତ ?



## ॥ ତୁମ ଆଖିର ପାଣ୍ଡୁଲିପି ॥

ତୁମ ଆଖିର ପାଣ୍ଡୁଲିପି ପଢ଼ିଲି
ଆଜି ଜାଣିଲି ମୃତ୍ୟୁ କ'ଣ,
ତା' ଜ୍ୟୋତିର ଶୀତଳତାରେ ଜଳିଗଲି
ଆଜି ଅନୁଭବ କଲି ମୃତ୍ୟୁ କ'ଣ ।

ଅମା ଆକାଶର ଅନ୍ଧାରରେ
ଶ୍ୟାମା ମୂର୍ତ୍ତିର ସ୍ପନ୍ଦନତାରେ
ପୁଣି ଜୀବନର ସ୍ୱଚ୍ଛ ପରିଧି ଭିତରେ
ଯୁଗ ଯୁଗ ଧରି ଏ ମୃତ୍ୟୁକୁ ଖୋଜୁଛି
କିନ୍ତୁ ପାଇନି ତ କେବେ
ତେଣୁ ଜୀବନ ପାଇନି ।

ତୁମ ଆଖିର ଜ୍ୟୋତି
ଆକାଶର ଅରୁନ୍ଧତି

କାଲି ମନ୍ଦିରରେ ପ୍ରଦୀପର ମଳିନ କାନ୍ତି
ମୋ' ଜୀବନରେ ଫିଟାଇଛନ୍ତି
ମୃତ୍ୟୁର ଭୃଙ୍ଗାସ୍ତ୍ର ନେତ୍ର
ଆଜି ସେ ନେତ୍ରର ଘନକୃଷ୍ଣ ଶିଖା
ପ୍ରାଣକୁ ଉଦ୍‌ଭାସିତ କରିଛି ।
କେବଳ ସୁନ୍ଦର କରନ
କରିଛି ଅପୂର୍ବ ।



## ।। ସକାଳ ପରି ।।

ସକାଳ ପରି
ପରିଚିତ ଏକ ନୂତନତା ଧରି
ତୁମେ ମୋତେ ଆଶ୍ଚର୍ଯ୍ୟ କରିଥିଲ
କାକଲି ପରି

କୋଳାହଳ ଭରା ମଧୁରତା ଢାଳି
ମୋତେ ମୁଗ୍‌ଧ କରିଥିଲ

ପୁଣି ଚନ୍ଦ୍ରିକା ପରି
ଦେହରେ ଶୀତଳ ଉଷ୍ମତା ଭରି
ତୁମେ ମୋତେ କରିଥିଲ ଉନ୍ମତ୍ତ ।



## ।। ରାତର ବୁଢ଼ିଆଣୀ ।।

ରାତର ବୁଢ଼ିଆଣୀ
ବୁଣୁଥିଲା ଅନ୍ଧାରର ଜାଲ
ଆଜ ସେ ଜାଲରେ ଛନ୍ଦ ହୋଇ
କେତୋଟି ନକ୍ଷତ୍ର ତାରକା
ଉହୁଲା ସକାଳ ।

ମୋ' ମନର ବୁଢ଼ିଆଣୀ କିନ୍ତୁ
ବୁଣୁଥିଲା ହତାଶାର ଜାଲ
ଆଜ ସେ ଜାଲରେ ଛନ୍ଦ ହୋଇ
କେତୋଟି କଅଁଳ ସପନ
ଖାଲି ଉହୁଲା ସକାଳ ।



## ।। ତୁମ ପାଖରେ ।।

ତୁମ ପାଖରେ ହୁଏତ ମୁଁ ଆଜି
ଡ୍ରୟାର୍‌ରେ ପଡ଼ିଥିବା ପୁରୁଣା ଚିଠିଟିଏ ପରି
ଅଖୋଲା, ଅଲୋଡ଼ା । କିନ୍ତୁ ଦିନେ
ତୁମ ମନରେ ବିଜୁଳି ଖେଳାଇ ଆସିଥିଲି
ଜୀବନର ନୂଆ ବାର୍ତ୍ତା ନେଇ ।

ତୁମେ ମୋତେ ବୁକୁରେ ଚାପିଥିଲ
ଥରେ ନୁହେଁ, ଦୁଇଥର ନୁହେଁ, ଅନେକ ଥର ପଢ଼ିଥିଲ
ଖାଲି ପଢ଼ିଥିଲ ।

ଏବେବି ତୁମ ଦୀର୍ଘଶ୍ୱାସ ମୋ' ଦେହରେ ବାଜୁଛି
ଏବେବି ମୋ' ଦେହରେ ରହିଛି ତୁମ ହାତର ବାସ୍ନା
ଆଉ ବି ରହିଛି ଲୁହ ଧୂଆ ସେ ଅକ୍ଷର ଗୁଡ଼ିକ
ଜ୍ୱଳନ୍ତ ଅତୀତର ଅସ୍ପଷ୍ଟ ସ୍ମାରକୀ ହୋଇ ।

ଆଜି ତୁମେ ହୁଏତ ତା' ଅସ୍ୱୀକାର କରିପାର
ମାତ୍ର ତୁମ ମନ ଆଜି ବି ତାକୁ ସ୍ୱୀକାର କରେ
ତାକୁ ନିମନ୍ତ୍ରଣ କରେ ।



## ।। ଆସ ବା ନଆସ ।।

ଆସ ବା ନଆସ
ମୁଁ କିନ୍ତୁ ତୁମକୁ ଅନେଇ ବସିଥିବି
ମରୁଭୂମି ଯେମିତି ଯୁଗଯୁଗ ଧରି
ମେଘ ପାଇଁ ଅନେଇ ରହେ
ଠିକ୍ ସେଇ-ମିତି

ତୁମ ପାଇଁ ଅନେଇ ବସିଲେ
ପ୍ରତିଟି ମୁହୂର୍ତ୍ତ ଗର୍ଭିଣୀ ହୋଇ ଉଠେ
ଅନିଶ୍ଚିତ ନିଶ୍ଚିତତାରେ ।
ପ୍ରତି ମୁହୂର୍ତ୍ତରେ ଲାଗେ ଯେମିତି
ପର୍ଦ୍ଦା ଠେଲି ତୁମେ ଘର ଭିତରକୁ ପଶି ଆସିବ
ଚେନାଏ ଖରା ପରି, ସୁଲୁସୁଲିଆ ବା' ପରି
ଅବା ଶନ୍ଧ୍ୟା ଚଢ଼େଇର ରାବ ପରି ।
ତୁମେ କିନ୍ତୁ ଆସନା
ସରେନି ବି ଅପେକ୍ଷାର ରୋମାଞ୍ଚିତ ବିରକ୍ତି ।

ସତରେ ତୁମେ ଯଦି ଦିନେ ଚାଲି ଆସ ?
ମୁଁ କ'ଣ କରିବି ?
ବସିବାକୁ ଚୌକିଟିଏ ଦେଇ ପାରିବି ତ !
କୁଶଳ ବାରତା ଟିକେ ପଚାରି ପାରିବି ତ ! କେଜାଣି !

ତୁମେ ସେଇମିତି ଖାଲି ମୁରୁକି ହସୁଥିବ
ଆଉ ମୁଁ ଧୀରେ ଧୀରେ ଜଡ଼ ପାଲଟି ଯାଉଥିବି
କାହିଁକି ନା ମୋ' ଅନେଇ ବସିବା ଯେ ଭାଙ୍ଗିଗଲା
ପ୍ରତିଟି ରକ୍ତ କଣିକା ମୟୂର ପରି ଏବେ ନାଚି ଉଠିବେ
ଗାଇ ଉଠିବେ କୋଇଲି ପରି । ପଥର ନ ପାଲଟି
ମୁଁ ଆଉ କ'ଣ କରିବି ଯେ !

ସତରେ କ'ଣ ତୁମେ ଦିନେ ଆସିବ ?
ଭାଙ୍ଗିଦେବ ତୁମ ପାଇଁ ମୋର ଅନେଇ ରହିବା ?
ସେତିକି ଗଲେ ମୋର ଆଉ କ'ଣ ରହିବ ଭଲା !

ଆସ ବା ନଆସ
ମୁଁ କିନ୍ତୁ ତୁମକୁ ଅନେଇ ବସିଥିବି ।

